ରୁକ୍ମଣୀଙ୍କର ଜନ୍ମ ପ୍ରତିପାଦିତ କରି ପୁରାଣ ବଚନ ସମର୍ଥନ କରିଅଛନ୍ତି । ପୁନରପି ସେ କୃଷ୍ଣଚନ୍ଦ୍ରଙ୍କୁ ପରମ, ରାଧାଙ୍କୁ ଚୈତନ୍ୟସ୍ୱୀପ୍ରକୃତି ଓ ରୁକ୍ମଣୀଙ୍କୁ ଜୀବରୂପେ ଅଭିହିତ କରି ବେଦାନ୍ତର ଦ୍ୱୈତମତକୁ ସଂରକ୍ଷଣ କରିଅଛନ୍ତି * ।

ଦ୍ୱାବିଂଶ ସ୍କନ୍ଦରେ ଅନେକ ପୁରର ମଧ୍ୟ ଦେଇ ମର୍ତ୍ତ୍ୟରୁ ବାସୁଦେବ ଶ୍ରୀକୃଷ୍ଣଙ୍କର ରୁକ୍ମଣୀଙ୍କ ସହି ଯେଉଁ ଗୋଲକଧାମ ଯାତ୍ରା ବର୍ଣ୍ଣିତ, ତାହା ସାଧାରଣ ପାଠକଙ୍କୁ ନିତାନ୍ତ ଅଯୁକ୍ତ, କ୍ରମଶୂନ୍ୟ ଓ ପୁନରୁକ୍ତରୂପେ ପ୍ରତୀୟମାନ ହୋଇପାରେ । କିନ୍ତୁ ଦର୍ଶନ, ପୁରାଣ ଓ ଶାସ୍ତ୍ରାଦି ଶ୍ରମସ୍ୱୀକାର କରି ଆଲୋଡ଼ନ କଲେ ଭକ୍ତକବିଙ୍କ ବିଶାଳବହୁଦର୍ଶିତା ସୁସ୍ପଷ୍ଟ ପ୍ରତିଭାତ ହୁଏ ।

ପ୍ରତ୍ୟେକ ପୁରରେ କୃଷ୍ଣଚନ୍ଦ୍ରଙ୍କର ଅବତାରମାନ ବିରାଜମାନ । ମହାଭୂତମାନଙ୍କର ପଞ୍ଚୀକରଣରେ ଜଗତର **ପିଣ୍ଡବ୍ରହ୍ମାଣ୍ଡର ଉତ୍ପତ୍ତି (ପଞ୍ଚଦଶୀ) । ସେହି ଜଗତକୁ ଅତିକ୍ରମ ପୁରମାନଙ୍କ ଅବସ୍ଥିତ** କରି ପଞ୍ଚଭୂତର ★ ମଧ୍ୟ ଦେଇ କୃଷ୍ଣ ରୁକ୍ମଣୀସହି ତମଃପ୍ରଧାନା ପ୍ରକୃତି ବା ତାମସ ଅହଙ୍କାରରେ (ଯାହା ସ୍ଥୂଳ ଶରୀରର ଆଧିଭୌତିକ ପ୍ରକୃତିର ମୂଳକାରଣ) ପ୍ରବେଶ କଲେ । ତଦନନ୍ତର ରାଜସ ଅହଙ୍କାରରବିକୃତି—କ୍ରିୟାଶକ୍ତି ପ୍ରାଣ, ଦଶଇନ୍ଦ୍ରିୟ ★ ଓ ଜ୍ଞାନଶକ୍ତି ବୁଦ୍ଧି-ଏମାନଙ୍କ ପୁର ଲଙ୍ଘି ସାତ୍ତ୍ୱିକ ଅହଂକାରର ବିକୃତି ଯେ ମନ ତାହା ମଧ୍ୟ ଦେଇ ଅବିକୃତ ମୂଳ ଅହଙ୍କାର (ରଜସତ୍ତ୍ୱୋପବୃଂହିତ ମହ-

---

* ଶ୍ରୀକୃଷ୍ଣ—ପରମ; ରାଧା—ଜୀବ; ରୁକ୍ମଣୀ—ପ୍ରକୃତି (ସାଧାରଣ ଅର୍ଥରେ) ଏ ଅର୍ଥ ମଧ୍ୟ ହୋଇପାରେ । "ଜୀବ ରାଧା ପରମ କୃଷ୍ଣ ଏ ଦୁହିଙ୍କ ବାସ । * * * ନିଗୂଢ଼ ପୀରତିରେ ଯେ ଅଙ୍ଗ ମିଶାମିଶି । ରାଧାର ଅଙ୍ଗେ କୃଷ୍ଣର ଅଙ୍ଗହିଁ ନ ମିଶି ।"

ପୁନଶ୍ଚ:—"ରାଧିକା ଜୀବ, ପରମ କୃଷ୍ଣ ଅଟନ୍ତି"—ଦ୍ୱାରକା ଦାସଙ୍କ ଶିବପୁରାଣର ଗୋପଲୀଳା ବର୍ଣ୍ଣନା ।

★ ଗ୍ରନ୍ଥରେ କେବଳ ଜଳ ଓ ଅନଳଦ୍ୱାରା ଅନ୍ୟାନ୍ୟ ମହାଭୂତମାନେ ସୂଚିତ ।

★ କବି ଏହାର ଉଲ୍ଲେଖ କରିନାହାନ୍ତି ।

*

ତତ୍ତ୍ୱରୁ ଦ୍ରବ୍ୟ ଜ୍ଞାନକ୍ରିୟାତ୍ମକ ତମୋଗୁଣମୟ ଯେ ତତ୍ତ୍ୱ ଉତ୍ପନ୍ନ ହୁଏ ତାହାର ନାମ ଅହଂକାର ।) ଅତିକ୍ରମ କଲେ ୧୨ । ତତ୍ପରେ ସେହି ପ୍ରକୃତିର ଆଦି ଜନନୀ ବିଷ୍ଣୁଙ୍କ ମାୟା ବୈଷ୍ଣବୀ ଶଙ୍ଖ ଚକ୍ର ଗଦା ପଦ୍ମଧାରିଣୀ ଦୁର୍ଗା—ତାଙ୍କର ଅବସ୍ଥିତି ଅର୍ଦ୍ଧମାତ୍ରା ନିକଟରେ । ତଦନନ୍ତର ତଦୁପରିସ୍ଥ ସତ୍ତ୍ୱପ୍ରଧାନ । ବିରାଟ-ପ୍ରକୃତି (ଯାହାକୁ ମହତ୍ତତ୍ତ୍ୱ ବା ପ୍ରଥମ ବୃଦ୍ଧି ଶକ୍ତି କୁହାଯାଏ) । ଜ୍ଞାନଶକ୍ତି ଦଶାଙ୍ଗୁଳମାତ୍ରାବସ୍ଥିବା ଅଥଚ ଦଶଦିଗ୍‌ବ୍ୟାପିନୀ ବିରଜା ଏହି ସତ୍ତ୍ୱ ପ୍ରକୃତିଙ୍କର ଶକ୍ତି । ସହସ୍ରଶୀର୍ଷା ଦେବପୁରୁଷ ବିରାଟଙ୍କରହିଁ ଏହି ଅଧିଷ୍ଠାନ । ଏହିଠାରୁ ବ୍ରହ୍ମାଙ୍କ ବେଦର ପ୍ରସୂତ, କାରଣ ବ୍ରହ୍ମା ଏହି ବିରାଟ ପୁରୁଷଙ୍କ ନାଭିକମଳରୁ ଜାତ ହୋଇଅଛନ୍ତି । ଏହି ବ୍ରହ୍ମ ଲୋକର ଊର୍ଦ୍ଧ୍ୱଭାଗରେ ଅର୍ଥାତ୍ ଅର୍ଦ୍ଧମାତ୍ରାର ଉପର ଭାଗରେ ଯେ ସକଳ ପୁର ବିଦ୍ୟମାନ, ତାହା କବିଙ୍କ ଉକ୍ତିରେ 'ନିଗମ,ନିତ୍ୟ, ଅଗମ୍ୟ, ଅଟେ' । ସେ ମଣ୍ଡଳମାନ ଭଗବାନଙ୍କ ଚିତ୍‌ଶକ୍ତିର ଆଶ୍ରିତ । ଏ ସମସ୍ତ ପାରହୋଇ ନିଗମ ମଧ୍ୟରେ ପ୍ରଥମତଃ ଲିଙ୍ଗରୂପୀ ଶିବଙ୍କ ପୁରରେ ପ୍ରବେଶ କଲେ । ଶିବ ଏଠାରେ ସତ୍ତ୍ୱମୟ । ଏହାଙ୍କ ଲୋଚନାନଳରୁ ସୂର୍ଯ୍ୟ ଚନ୍ଦ୍ରାଦି ଜ୍ୟୋତିଷ୍କ ବର୍ଗର ସୃଷ୍ଟି । ଏ ରଜସ୍ତମୋଗୁଣଦୋଷରହିତ ହେତୁ ପ୍ରଳୟଙ୍କର ନୁହନ୍ତି । ତଦନନ୍ତର କୃଷ୍ଣମୂର୍ତ୍ତିଙ୍କ ବ୍ରହ୍ମରୂପରେ ଦର୍ଶନ କଲେ (ଏଠାରେ କୃଷ୍ଣ ନିର୍ଗୁଣ ବ୍ରହ୍ମ ଯେଉଁ ବ୍ରହ୍ମ ଭଗବାନ କୃଷ୍ଣଚନ୍ଦ୍ରଙ୍କର ପ୍ରଭା ସେହି ବ୍ରହ୍ମ ଏହିଠାରେ ଅବସ୍ଥିତ । ଏହିମତେ ଅନେକ ପୁର ଅତିକ୍ରମ କରି ବାସୁଦେବ ମହାବୈକୁଣ୍ଠର ସପ୍ତାବରଣସ୍ଥ ବିଭୂତି ମଣ୍ଡଳରେ ଉପସ୍ଥିତ ହେଲେ । ବିଭୂତି ସତ୍ତ୍ୱାତ୍ମିକା ଓ ଚିନ୍ମୟୀ । ଏହି ବିଭୂତି ବା ଐଶ୍ୱର୍ଯ୍ୟର ଷୋଡ଼ଶକଳା ବା ମହିମାର ପ୍ରସ୍ତର ଅଛି । ଯଥା—ଶ୍ରୀ, ଭୂ, କୀର୍ତ୍ତି, ଇଳା, ଲୀଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା ଈଶାନା ଓ ଅନୁଗ୍ରହା । ବିଭୂତିମଣ୍ଡଳ ପରେ ଗଣମଣ୍ଡଳ:—ବିଷ୍ୱକ୍‌ସେନ ଭବନ ପରେ ଅନନ୍ତ ଭବନ ଅତିକ୍ରମ କରି

---

୧୨ ଭାଗବତ ଦ୍ୱିତୀୟସ୍କନ୍ଧ ୫ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ପଞ୍ଚୀକରଣ—କ୍ଷିତି, ଆପତେଜାଦିର ପ୍ରାକୃତିକ ସଂଯୋଗ । ଯଥା ; କ୍ଷିତ୍ୟାଦିରୁ ଏକର $\frac{1}{2}$ + ଅନ୍ୟାନ୍ୟମାନଙ୍କର $\frac{1}{8}$ ଯୋଗ—$\frac{1}{2}+\frac{1}{8}+\frac{1}{8}+\frac{1}{8}+\frac{1}{8}=1$;

ଗରୁଡ଼ ଭୁବନରେ ଉପସ୍ଥିତ ହେଲେ (ପୁରାଣ ମାନଙ୍କରେ ଗରୁଡ଼, ବିଷ୍ୱକ ସେନାଦି ମହା ବୈକୁଣ୍ଠର ଆବରଣ ଦେବତା ରୂପେ କଥିତ) । ଏଠାରେ ମହାବୈକୁଣ୍ଠ ଭୁବନ ଚଣ୍ଡ, ପ୍ରଚଣ୍ଡ, ଭଦ୍ର, ସୁଭଦ୍ର, ଜୟ, ବିଜୟ ଧାତା, ବିଧାତା ନାମକ ଅଷ୍ଟ ଦ୍ୱାରପାଳଙ୍କ ଦ୍ୱାରା ସୁରକ୍ଷିତ । ଦ୍ୱାରୀମାନେ ବାସୁଦେବଙ୍କ ଠାରେ ଶଙ୍ଖ-ଚକ୍ର-ଗଦା-ପଦ୍ମାଦି ବୈଷ୍ଣବ ଚିହ୍ନମାନ ଦେଖି ତାହାଙ୍କୁ ବୈଷ୍ଣବ ଧାମରେ ପ୍ରବେଶ ନିମନ୍ତେ ଅନୁମତି ଦେଲେ । ବୈକୁଣ୍ଠ ବତିଶଦଳ ବିଶିଷ୍ଟ ଏହି ବତିଶଦଳରେ ଭଗବାନଙ୍କ ବତିଶ ଅବତାର ବିଦ୍ୟମାନ, ଯଥା—ଚତୁଃସନ, ବରାହ, ନାରଦ, ନର, ନାରାୟଣ, କପିଳ ଦତ୍ତାତ୍ରେୟ ଯଜ୍ଞ, ଋଷଭ, ପୃଥୁ, ମତ୍ସ୍ୟ, କୂର୍ମ, ଧନ୍ୱନ୍ତରୀ, ମୋହିନୀ ନରସିଂହ, ବାମନ, ପରଶୁରାମ, ବ୍ୟାସ, ରାମଚନ୍ଦ୍ର, ବଳରାମ, କୃଷ୍ଣ, ବୁଦ୍ଧ, କଳ୍କୀ, ହଂସ, ଧ୍ରୁବପ୍ରିୟ ହୟଶୀର୍ଷ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବ୍ରହ୍ମା, ବିଷ୍ଣୁ, ଶିବ । ତଦନନ୍ତର ଦଶଦଳରେ ଦଶଦିଗପାଳ-ଇନ୍ଦ୍ର, ଈଶ୍ୱର, ବାୟୁ ଯମ, ଅଗ୍ନି ବରୁଣ, କୁବେର, ନୈରୁତ, ବ୍ରହ୍ମା ।

ମଧ୍ୟରେ ବତିଶଦଳ ବସଇ ଯାହାର । ବାହାରେ ପୁଣି ମଧ୍ୟ ଦଶଦଳ ତାର ॥
ସେହିଠାରେ ଅଛନ୍ତି ଦଶଦିଗପାଳ । ଦ୍ୱାରକା ଦାସଙ୍କ ଶିବ ପୁରାଣ ॥

ଓ ଅନ୍ୟାନ୍ୟ ପାର୍ଶ୍ୱଦେବତାମାନେ ଅଛନ୍ତି । ଏହା ଦ୍ୱାରକା—ଉଦ୍ଧବ, ଅକ୍ରୁରଙ୍କର ମୂଳସ୍ଥାନ । ଏହିଠାରେ ଅଷ୍ଟପାଟବଂଶୀ ମଧ୍ୟ ଅଛନ୍ତି । ଏହାର ଚତୁର୍ଦ୍ଦିଗରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଅଛନ୍ତି । ଏଠାରୁ ଗୋଲୋକର ପ୍ରାରମ୍ଭ—ଏହି ସ୍ଥାନରୁ ଗୋଲୋକର ନବ ଆବରଣର ଉପକ୍ରମ * । ପ୍ରଥମତଃ ବତିଶ ଉପବନବିଶିଷ୍ଟ ବତିଶଦଳ (୧) । ପ୍ରତ୍ୟେକଦଳ ଭଗବାନଙ୍କ ବିଶେଷ ବିଶେଷ ଲୀଳାଦରଣରେ ଆବୃତ । ଇତମଧ୍ୟରେ ଷୋଡ଼ଶ ବନବିଶିଷ୍ଟ ଷୋଡ଼ଶଦଳ । ପ୍ରତ୍ୟେକ ବନରେ ବିଶେଷ ବିଶେଷ ନିଗୂଢ଼ ବନଲୀଳାମାନଙ୍କର ଅବସ୍ଥିତ । ତନ୍ମଧ୍ୟରେ ଅଷ୍ଟଦଳ କବି ବର୍ଣ୍ଣିତ ଦଳର ଲୀଳାମାନ ପଦ୍ମପୁରାଣ ଓ ଅଚ୍ୟୁତାନନ୍ଦ ମଧ୍ୟ ତାଙ୍କ ଶୂନ୍ୟସଂହିତାର ରାଧାତନ୍ତ୍ରାଦିର ଅନୁରୂପ । ଚତୁର୍ଥ ଅଧ୍ୟାୟରେ ତାହା ବର୍ଣ୍ଣନ କରିଅଛନ୍ତି ।

---

* ପୁରୁଷୋତ୍ତମ ତାପିନୀ ଓ ପଦ୍ମପୁରାଣ ମତେ ସପ୍ତାବରଣ ପିଣ୍ଡିକ ଶ୍ରୀଚନ୍ଦନଙ୍କ ବସନ୍ତରାସରେ ନବାବରଣ ବିଷୟ ଉଲ୍ଲେଖ ଅଛି । (ତ୍ରୟୋଦଶ ସର୍ଗ) ୧୧୩ ପୃଷ୍ଠା ।

୧:—କଦମ୍ବ ଖଣ୍ଡିକା ନନ୍ଦ ପଲାଶ ଅଶୋକାଦି ୩୨ ଉପବନ ।

ଯମୁନାପୂଲିନବନ କାଳନ୍ଦୀର ହ୍ରଦ ।
ଅଷ୍ଟଦଳ ମଧ୍ୟେ ଦେଖ କଦମ୍ବର ଭେଦ ॥
ଓଁକାର ପାଖୁଡ଼ା ଏହୁ ଷୋଡ଼ଶୀ ସ୍ଥାନ ।
ଏହୁ ଦଳ ମଧ୍ୟେ ବ୍ୟୋମାସୁରଟି ନିଧନ ॥
ଷଣ୍ଢାସୁର ବଧ ଶ୍ରପଲବ୍ଧା ସ୍ଥାନ ଏହୁ ।
ଦ୍ୱାଦଶ ପାଖୁଡ଼ା ମଧ୍ୟେ ତ୍ରିଭଙ୍ଗରେ ଥାଇ ॥
ଘଞ୍ଚ ଅନ୍ନ ଭୋଜନଟି ଏହୁ ଯେ ଦଳରେ ।
ଖଣ୍ଡିତା ଲକ୍ଷଣ କୃଷ୍ଣ ରାଧିକା ସଙ୍ଗରେ ॥
ଇକାର ମାତ୍ରାକୁ ଦେଖ ଅର୍ଦ୍ଧମାତ୍ରା ସେହୁ ।
ଉତ୍କଣ୍ଠିତା ଲକ୍ଷଣଟି ଏହୁ ଦଳେ ରହୁ ॥
ଯଶୋଦା ବାସକସଜ୍ଜା ଏହୁ ଦଳେ ସ୍ଥିତ ।
ଏହୁ ଦଳେ ପୂଜ ଗୋପୀ କୃଷ୍ଣ ଲଭେ ପତି ॥
ଏହୁଦଳେ ଗୋପୀଙ୍କର ବସ୍ତ୍ର ଯେ ହରଣ ।
କଳହାନ୍ତରିତା ଦେଖ ଏହୁ ଯେ ଦଳେଣ ॥
ଅକାର ଦଳରେ ସିନା କେଶୀକଲେ ବଧ ।
ସ୍ୱାଧୀନଭର୍ତ୍ତୃକା ଏହୁ ଦଳରେ ପ୍ରସିଦ୍ଧ ॥
ମଧ୍ୟ ଦଳଟି ନିକୁଞ୍ଜକୁଟୀର ମଧ୍ୟରେ ।
ଅଭିସାରିକା ଲକ୍ଷଣ ଏହୁ ଯେ ଦଳରେ ॥
ଠାବେ ଠାବେ ବାସୁଦେବ ରୁକ୍ମିଣୀ ଯେ ଅଛି ।
ରାମ କାମ ଅନିରୁଦ୍ଧ ଏହୁଠାରେ ଭେଦ ॥

ଶୂନ୍ୟସଂହିତା ॥

ଏହୁ ଅଷ୍ଟଦଳର ରାସଦ୍ୱାରରେ ରକ୍ଷକ ଶ୍ରୀ ଗୋପୀଶ୍ୱର ମହାଦେବ । ଏଠାରେ ସମସ୍ତେ କୃଷ୍ଣମୂର୍ତ୍ତି, ସ୍ଥାନେ ସ୍ଥାନେ ରୁକ୍ମିଣୀ ବାସୁଦେବରୂପୀ, ଲକ୍ଷ୍ମୀନାରାୟଣରୂପୀ, ରାଧାମାଧବରୂପୀ, ଏହା ମୂଳ ନିତ୍ୟସ୍ଥଳ ନୁହେଁ । କବିଙ୍କ ବର୍ଣ୍ଣନାର ସହିତ ଅଚ୍ୟୁତାନନ୍ଦ ବର୍ଣ୍ଣନାର କେଉଁଣ ସାମ୍ୟ ତାହା ଉଭୟଙ୍କୁ ମିଳାଇ ପଢ଼ିଲେ ଜଣାପଡ଼େ । ସେହି ନିତ୍ୟଧାମକୁ ଯିବା ନିମିତ୍ତ ବାସୁଦେବ କାଳନ୍ଦୀ ପୂଲିନରେ ପ୍ରବେଶ ହେଲେ । କାଳନ୍ଦୀ କାଳମାୟା; ନିତ୍ୟଧାମକୁ ବେଷ୍ଟନ କରି ତାହାଙ୍କର ସ୍ଥିତି । ବାସୁଦେବଙ୍କୁ ଦେଖି ବୈଷ୍ଣବୀମୂର୍ତ୍ତି କାଳମାୟା

ପଥ ଗ୍ରହ୍ଣ କଲେ । ସେଠାରୁ ଯାଇ ସେ ଅଷ୍ଟବଟ ନିକଟରେ ପ୍ରବେଶ ହେଲେ । ଏ ଆବରଣରେ ପଶ୍ଚିମଦ୍ୱାରରେ ପାରିଜାତ ତରୁମୂଳରେ ଆଦିମୂର୍ତ୍ତି ବାସୁଦେବ, ଉତ୍ତରଦ୍ୱାରରେ ଆଦି ସଙ୍କର୍ଷଣ, ପୂର୍ବଦ୍ୱାରରେ ଆଦି ପ୍ରଦ୍ୟୁମ୍ନ ଓ ଦକ୍ଷିଣ ଦ୍ୱାରରେ ଆଦି ଅନିରୁଦ୍ଧ ତଦ୍ଧ୍ୱଂ ଗୋଲୋକମଣ୍ଡଳର ମୂଳ ନିତ୍ୟସ୍ଥଳରେ ବାସୁଦେବ ମୂର୍ତ୍ତି ନାହାନ୍ତି । କେବଳ ମାଧୁର୍ଯ୍ୟମୟ ରାଧାକୃଷ୍ଣ ଓ ଗୋପୀ । ରୁକ୍ମିଣୀଙ୍କ ଅନୁରୋଧରେ ବାସୁଦେବ ନିତ୍ୟ ଗୋଲୋକଧାମର ସୁବର୍ଣ୍ଣମୟ ପ୍ରାଚୀରର ଦ୍ୱାରଦେଶରେ ଉପସ୍ଥିତ ହେଲେ *। ଏହି ସ୍ଥାନରେ ପ୍ରଧାନ ଦ୍ୱାରପାଳିକା ତ୍ରିପୁରେଶ୍ୱରୀ । ସେ ବାସୁଦେବଙ୍କୁ ପ୍ରବେଶ କରିବା ନିମିତ୍ତ ନିଷେଧ କଲେ ଏବଂ କହିଲେ, ନିତ୍ୟଧାମରେ ରୁକ୍ମିଣୀଙ୍କର ପ୍ରବେଶ ନିଷିଦ୍ଧ । ବାସୁଦେବ ଶ୍ରୀକୃଷ୍ଣଙ୍କ ନାନାବିଧ ଅନୁରୋଧରେ ତ୍ରିପୁରା ତାଙ୍କୁ ମନ୍ତ୍ର ଦେଲେ ଏବଂ ମନ୍ତ୍ରୀ ରାଧାଙ୍କ ଦର୍ଶନଜନିତ ପୁଣ୍ୟରୁ ରୁକ୍ମିଣୀ ମନ୍ତ୍ରସିଦ୍ଧିରେ ସମର୍ଥା ଏଣୁ ତାହାଙ୍କୁ ମନ୍ତ୍ର ଦେବା ନିମିତ୍ତ କୃଷ୍ଣଚନ୍ଦ୍ରଙ୍କୁ ଆଦେଶ ଦେଲେ । ତଦନନ୍ତରେ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତି କରି ରୁକ୍ମିଣୀ କୃଷ୍ଣଚନ୍ଦ୍ରଙ୍କଠାରୁ ମନ୍ତ୍ର ଗ୍ରହଣ କଲେ ଓ ନିଜେ ମନ୍ତ୍ରଦାନ କରି ଅଷ୍ଟପାଟବଂଶୀଙ୍କର ଗୁରୁ ହେଲେ ।

କବି—ଭକ୍ତ କବି ଦେବଦୁର୍ଲ୍ଲଭ ଦାସ ଜଣେ ପ୍ରକୃତ ବୈଷ୍ଣବ ଥିଲେ । ସେ ଗ୍ରନ୍ଥ ଶେଷରେ ତାଙ୍କର ପରିଚୟ ଦେଇ **କବି ଦେବଦୁର୍ଲ୍ଲଭ ।** ନାହାନ୍ତି । ସେ ତାଙ୍କର ଭାବରେ···ଅହଂକାର ଶୂନ୍ୟତାରେ ଗ୍ରନ୍ଥର ଉପସଂହାର କରିଅଛନ୍ତି । ସେ ଯେତେକ କଥା କହିଅଛନ୍ତି, ତାହା ତାଙ୍କ ହୃଦୟର ମନ୍ତ୍ରିତ୍ୱର ପରିଚୟ ଦିଏ । ସେ ସତ୍ୟ ଓ ଧର୍ମପ୍ରାଣ ଥିଲେ । ସେ ଯେ ଜଣେ ଗୃହୀ ବୈଷ୍ଣବ ଥିଲେ ତାହା ତାଙ୍କ ଉପସଂହାରରୁ ସୁସ୍ପଷ୍ଟ ପରିଜ୍ଞାତ ହୁଏ । ତାଙ୍କର ଆର୍ଥିକ ଅବସ୍ଥା, ଆବଶ୍ୟକ ଅଭାବମାନ ପୂରଣ କରିବାରେ ଉପଯୋଗୀ ଥିଲା ପରି ତାଙ୍କ ଉକ୍ତିରୁ

* ପୁରୁଷୋତ୍ତମ ତାପିନୀ ଦ୍ରଷ୍ଟବ୍ୟ, ଏହି ନିତ୍ୟଧାମକୁ ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ ୫୯ ଛାନ୍ଦରେ ବର୍ଣ୍ଣନ କରିଅଛନ୍ତି । ସେ ବର୍ଣ୍ଣନ କରି ଶେଷରେ କହିଅଛନ୍ତି "ତାପିନୀ ପ୍ରବାଦମାନେ ଜାଣିବେ ଯେ ଅନ୍ୟମାନେ ମାତ୍ର ଦିଗ ଦର୍ଶନ ଭାବେ କଲି କଥନ" । ଦେବଦୁର୍ଲ୍ଲଭ ମଧ ସେହିପରି ସମ୍ପୂର୍ଣ୍ଣ ବିବରଣ ନ ଦେଇ ଠିକେ ଠିକେ କହିଅଛନ୍ତି ।

ଜଣାପଡ଼ୁନାହିଁ । ସଂସାରର ପ୍ରବୃତ୍ତିରେ କ୍ଷୁବ୍ଧ ହୋଇ ସେ ବରଂ ସଙ୍ଗହୀନ ନିର୍ଜ୍ଜନ ବାସରେ ସନ୍ତ ଓ ପବିତ୍ର ଜୀବନ ଯାପନ କରିବାକୁ ଶ୍ରେୟ ମଣିଥିଲେ । ସତ୍ୟପ୍ରାଣ ଲୋକ ଲୋକପ୍ରିୟ ହୋଇପାରେ କିନ୍ତୁ ସେହି ସତ୍ୟପ୍ରାଣତା ଅର୍ଥ-ଶୂନ୍ୟ, ଯେତେବେଳେ ତାହାର ସଞ୍ଚାର ଅନ୍ୟ ପ୍ରାଣରେ ସମ୍ଭବେ ନାହିଁ । ନିଜର ପ୍ରାଣ ବାକ୍ୟତଃ କାର୍ଯ୍ୟତଃ ଉପଦେଶରେ ଅନ୍ୟତ୍ର ନ ଦେଖି ସେ ହିଂସ ନିରତ ସାଧାରଣ ମାନବସମାଜ ପରିହାର କରିଥିଲେ ବୋଲି ପ୍ରତୀୟମାନ ହୁଏ । କବିଙ୍କ ଯୁଗର ଉତ୍କଳରେ ବୋଧହୁଏ ପ୍ରବଳ ସମରବହ୍ନି ଜଳୁଥିଲା ଓ ତଜ୍ଜନିତ ନରହିଂସା କବିଙ୍କ ହୃଦୟରେ ଦାରୁଣ ଆଘାତ ପ୍ରଦାନ କରିଥିଲା ।

"ସବୁଙ୍କରି ସଙ୍ଗ ବୁଦ୍ଧି ଯେତେ ସେ ହୁଅନ୍ତି
ଖଡ଼ଗ କମାଣ ବାଣ କପାଳେ ବହନ୍ତି ।
ଏକକୁ ଅନେକ ନ ଚିହ୍ନନ୍ତି ମଉଛେଲେ
ତେଣୁ ମରିମରି ହୋଇ ମରନ୍ତି ସକଳେ ।"

୨୪ ଛାନ୍ଦ, ୩୭ ପଦ ।

ଏହା କବିଙ୍କଙ୍କ ହୃଦୟ କଥା ।

ସେ ସାଧକ ଥିଲେ, ଧର୍ମରେ ଅନୁରାଗୀ ଥିଲେ । ଉପସଂହାର ପାଠ କଲେ ପ୍ରତୀୟମାନ ହୁଏ, ତାଙ୍କ ସାଧନା ଓ ଧର୍ମ୍ମବିସ୍ତାର ପ୍ରତିକୂଳର ସେ ଦ୍ୱେଷୀ ଥିଲେ । ସେ ଉତ୍କଳର ଯେଉଁ ଅଞ୍ଚଳର ଲୋକ ଥିଲେ, ତାହା ଜାଣିବା କଠିନ । କିନ୍ତୁ କବିଙ୍କ ପୁରୁଷୋତ୍ତମ କ୍ଷେତ୍ରରେ ଭୌଗୋଳିକ ଜ୍ଞାନ, ସମୁଦ୍ରର ବର୍ଣ୍ଣନ ଓ ପୁରୀ ପ୍ରଚଳିତ ବିଶିଷ୍ଟ ମିଷ୍ଟାନ୍ନାଦି ଖାଦ୍ୟପେୟର ଉଲ୍ଲେଖରୁ ଅନୁମିତ ହୁଏ ଯେ ସେ ବହୁକାଳ କ୍ଷେତ୍ରବାସୀ ଥିଲେ । କବିଙ୍କ ଯୁଗର ବିଷୟ ପୂର୍ବରୁ କଥି ହୋଇଅଛି ।

ଯେଉଁ ଶକ୍ତିଦ୍ୱାରା ପଦାର୍ଥର ତତ୍ତ୍ୱ ଜଣାଯାଏ ତାହାର ନାମ ପ୍ରତିଭା—

**ପ୍ରତିଭା ।** ପ୍ରକୃତିର ବାହ୍ୟ ଓ ଅନ୍ତର ରୂପ ଯାହାର ସମ୍ମୁଖରେ ଉନ୍ମୋଚିତ ଓ ଯାହା ତାହାର ଧର୍ମ୍ମ ଗ୍ରହଣ କରିବାରେ ସମର୍ଥ ତାହାହିଁ ପ୍ରତିଭା । କବିଙ୍କ ଦୃଷ୍ଟି ସମକ୍ଷରେ କେବଳ ଯେ ଜଡ଼ ପ୍ରକୃତି ଅବସ୍ଥାପିତ ଥିଲା ତାହା ନୁହେଁ, ସେ ଚିତ୍ତ ପ୍ରକୃତିରେ ମଧ୍ୟ ବିଳାସୀ ଥିଲେ । ବାସ୍ତବ ପ୍ରକୃତିର

ବର୍ଣ୍ଣନାରେ ଯେ ଶବ୍ଦର ସୁନ୍ଦର ପରିପାଟୀ ଓ ମଧୁର ପରିଚ୍ଛଦ ତତ୍ତ୍ୱ ପ୍ରକୃତିର ବିସ୍ତାର ବିସ୍ଫୁଟରେ ମଧ୍ୟ ତାହାର ସେହିପରି ଅପୂର୍ବ ସୌନ୍ଦର୍ଯ୍ୟ ଓ ମଧୁର ସଂଯୋଜନା । ପ୍ରତିଭା ବଳରେ କବି ବାହ୍ୟ ପ୍ରକୃତି ବର୍ଣ୍ଣନରେ କିପରି ସିଦ୍ଧହସ୍ତ ତହିଁର ନିଦର୍ଶନ ତାଙ୍କ ୧୬ଶ ଛାନ୍ଦର ଋତୁବର୍ଣ୍ଣନ ଓ ୧୯ଶ ଛାନ୍ଦର ରାସଲୀଳା ବର୍ଣ୍ଣନ । ୨୧, ୨୨ ଓ ୨୩ ଛାନ୍ଦମାନଙ୍କରେ ତତ୍ପ୍ରକୃତି ବିସ୍ତାର ବିସ୍ଫୁଟରେ କବିଙ୍କ ପ୍ରତିଭାଜନିତ କୃତିତ୍ୱ ପରିସ୍ଫୁଟ ।

**ଶାସ୍ତ୍ରଦର୍ଶିତା ।**

କବିଙ୍କ ବହୁଶାସ୍ତ୍ରଦର୍ଶିତା ବିଷୟବସ୍ତୁ ବିଚାର ପ୍ରସଙ୍ଗରେ କଥିତ ହୋଇ-ଅଛି । ପୁରାଣ, ଦର୍ଶନ, ସ୍ମୃତି, ଯୋଗ, ତନ୍ତ୍ର ଓ ସଙ୍ଗୀତ ପ୍ରଭୃତି ବିଦ୍ୟାରେ କବିଙ୍କର ପ୍ରାବୀଣ୍ୟ ଥିଲା । ଏହି ଶାସ୍ତ୍ରମାନଙ୍କର ତତ୍ତ୍ୱୋପଲବ୍ଧି କବିଙ୍କ ତୃପ୍ତିର ଓ ଲବ୍ଧତତ୍ତ୍ୱମାନଙ୍କର ସ୍ୱକାବ୍ୟରେ ସମୀଚୀନ ସଂଯୋଜନ କବିଙ୍କ ପ୍ରତିଭାର ନିଦର୍ଶନ । କଳ୍ପନାଶକ୍ତି ଓ ଭାବନାଶକ୍ତି ପରସ୍ପର ଅନୁରଙ୍ଗୀ ସଖୀ । କବିଙ୍କର ଏ ଶକ୍ତି ଦ୍ୱୟର ବିଚାର ଯଥା ସ୍ଥାନରେ କରାଯାଇଅଛି ।

**ଚରିତ୍ରଚିତ୍ରଣ ଓ ଔଚିତ୍ୟଜ୍ଞାନ ।**

ରୁକ୍ମିଣୀଙ୍କର ଅଭିମାନ; ଜାମ୍ବବତୀଙ୍କର ଈର୍ଷ୍ୟା; ଗାପ୍ତେଣୀ ମାୟା କୁମାରୀମାନଙ୍କର ଲୀଳାନୁରୂପ ବ୍ୟବହାର ଓ କାର୍ଯ୍ୟକୁଶଳତା; ଗରୁଡ଼ର ଆଜ୍ଞାନୁବର୍ତ୍ତିତା ଓ ମର୍ଯ୍ୟାଦା ଜ୍ଞାନ; କୃଷ୍ଣ ଦର୍ଶନରେ ରାଧାଭିମାନ ଓ କୃଷ୍ଣ ବଚନରେ ସାନ୍ତ୍ୱନା ପ୍ରାପ୍ତି; ଅଷ୍ଟପାଟବଂଶୀଙ୍କ ଦର୍ଶନ ନିମନ୍ତେ ରାଧାଙ୍କର ଉତ୍କଣ୍ଠା ପ୍ରକାଶ; ରାଧାଙ୍କର ରୁକ୍ମିଣୀଙ୍କ ପ୍ରତି ଉପଦେଶ ଗର୍ଭିତ ବଚନ, ରାଧାଙ୍କର ରୁକ୍ମିଣୀ ଓ ଅନ୍ୟାନ୍ୟ ପାଟବଂଶୀ-ମାନଙ୍କ ନିମନ୍ତେ କୃଷ୍ଣଙ୍କ ଅତି ଉଦାରତାବ୍ୟଞ୍ଜକ ଓ ଆଦର୍ଶମୟ ଅନୁରୋଧ; ଦ୍ୱାରକା ପ୍ରତ୍ୟାବର୍ତ୍ତନ ଅବସରରେ ରାଧାଙ୍କ ମୁଖରେ ଦୁଃଖ ପ୍ରକାଶ କରାଇ-ବାରେ ଆଦର୍ଶ ନରଜୀବନର ଦୃଷ୍ଟାନ୍ତ ପ୍ରଦର୍ଶନ; ଗରୁଡ଼ର ରୂପବର୍ଣ୍ଣନ ଓ ତତ୍ପ୍ରତି ଗୋପୀମାନଙ୍କର ଅନୁରୋଧ; ଦ୍ୱାରକା ପ୍ରତ୍ୟାବର୍ତ୍ତନ ପରେ ରୁକ୍ମିଣୀଙ୍କର ହୀନତା ଓ ଦୀନତା ପ୍ରଖ୍ୟାପନ ଓ ଅନ୍ୟାନ୍ୟ ବିଷୟମାନ କବିଙ୍କ ସିଦ୍ଧଚରିତ୍ର ଚିତ୍ରଣ ଓ ଔଚିତ୍ୟଜ୍ଞାନର ଜ୍ୱଳନ୍ତ ନିଦର୍ଶନ ।

**ସୌନ୍ଦର୍ଯ୍ୟ ଜ୍ଞାନ ।**

କବିଙ୍କର ସୌନ୍ଦର୍ଯ୍ୟଜ୍ଞାନ ଅନନ୍ୟସାଧାରଣ । ରାଧା, କୃଷ୍ଣ ଓ ଗରୁଡ଼ର ରୂପବର୍ଣ୍ଣନ କବିଙ୍କର ସୂକ୍ଷ୍ମଦୃଷ୍ଟି ଓ ସିଦ୍ଧହସ୍ତତାର ପରିଚାୟକ । ୧୮ଶ ଛାନ୍ଦ ବର୍ଣ୍ଣିତ ପୁଷ୍ପଚୟନ କାଳରେ ଗୋପୀମାନଙ୍କର ସଙ୍ଗୀତ ଗୀତ କବି ଅତ୍ୟନ୍ତ ନିପୁଣତା ସହ ଚିତ୍ର କରିଅଛନ୍ତି । କବିଙ୍କ ସୌନ୍ଦର୍ଯ୍ୟଜ୍ଞାନର ପୂର୍ଣ୍ଣ ଅବବୋଧ ନିମିତ୍ତ ସମଗ୍ର ଗ୍ରନ୍ଥଟି ଅଧ୍ୟୟନ କରିବା ପାଇଁ ପାଠକମାନଙ୍କୁ ଅନୁରୋଧ କରି ଆମ୍ଭେ ତହିଁରୁ ଗୋଟିଏ ମାତ୍ର ପଦ ଉଦ୍ଧୃତ କରୁଅଛୁଁ ।

(ସଖି ଗୋ)

କେତେ ବୃକ୍ଷେ ଉଠି     କୁସୁମେ ତୋଳନ୍ତେ
ମୁଖ ପଦ୍ମ ଗନ୍ଧ ପାଇ
ପୁଷ୍ପ ତେଜି ଭୃଙ୍ଗ     ବଦନ ଚୁମ୍ବନ୍ତେ
ବୃକ୍ଷରୁ ପଡ଼ିଲ ଡେଇଁ ଗୋ ।
ପଳାନ୍ତେ ଗୋଡ଼ାନ୍ତି     ଚୁମ୍ବନ୍ତେ ଛାଡ଼ାନ୍ତି
ଛଡ଼ାନ୍ତେ ପଶନ୍ତି ବାସେ
କେଶ ବସନ ଦୂରେ     ଫେଡ଼ି ଝାଡ଼ନ୍ତେ
ଦୂରେ ସଖୀଜନ ହସେ ଗୋ ।୩।

**ପ୍ରାଦେଶିକ, ଭାବ ବିଶ୍ୱଭାବ ଓ ମହାଭାବର କବିତା ।**

ଯେଉଁ କବିତା ପାଠକଲେ ଦେଶବିଶେଷର ଓ କାଳବିଶେଷର ଲୋକେ ପ୍ରୀତିଲାଭ କରନ୍ତି ତାହା ପ୍ରାଦେଶିକ ଭାବର କବିତା । ଏ କବିତାର ସୌନ୍ଦର୍ଯ୍ୟାନୁବୋଧରେ ଦେଶକାଳର ଐକାନ୍ତିକ ସାହଚର୍ଯ୍ୟରେ ବ୍ୟଭିଚାର ପରିଦୃଷ୍ଟ ହୋଇଥାଏ ।

ଯେଉଁ କବିତା ସର୍ବକାଳରେ ସର୍ବଦେଶରେ ଜନସାଧାରଣଙ୍କ ହୃଦୟକ୍ଷେତ୍ରରେ ଚମତ୍କାରିତ୍ୱ ଉତ୍ପାଦନ କରେ ତାହା ବିଶ୍ୱଭାବାତ୍ମକ କବିତା । ପୁଣି ଯେଉଁ କବିତା ସର୍ବଦେଶ ଓ ସର୍ବକାଳର ଚିନ୍ତାଶୀଳ ଲୋକଙ୍କର ହୃଦୟ ଓ ମସ୍ତିଷ୍କର ବୃତ୍ତିରେ ଅପୂର୍ବ ଆନନ୍ଦ ପ୍ରଦାନ କରେ ତାହା ମହାଭାବର କବିତା । ଶେଷୋକ୍ତ ଶ୍ରେଣୀସ୍ଥ କବିତା ଧର୍ମ ବିଷୟକ; ସବୁ ଧର୍ମର କାବ୍ୟମାନ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଏହାକୁ କେତେକ ସମାଲୋଚକ ପ୍ରାଦେଶିକ ବା ଏକଦେଶୀ ସାହିତ୍ୟ ଆଖ୍ୟା

ପ୍ରଦାନ କରନ୍ତି । ଅନ୍ତରଗତ ବୈଶିଷ୍ଟ୍ୟହିଁ ଏହି ବିଭଜନର କାରଣ। ଧର୍ମବ୍ୟତିରିକ୍ତ ଅନ୍ୟାନ୍ୟ ବିଷୟର କବିତାରେ ମଧ୍ୟ ପ୍ରାଦେଶିକତ୍ୱ ଦୋଷ ଉତ୍ଥାପିତ ହୋଇପାରେ । କାରଣ ସମାଜର ଗୀତ ନୀତି ଆଚାର ବ୍ୟବହାରର ବିଶିଷ୍ଟତା ହେତୁ ତାହାର ଏପରି ନାମକରଣ ହୋଇଅଛି । କବିତାର ଏହି ତିନି ବିଭାଗ ପାଶ୍ଚାତ୍ୟ ସମାଲୋଚକଙ୍କର ସୌନ୍ଦର୍ଯ୍ୟାନୁଭବ ଓ ଆନନ୍ଦୋପଲବ୍ଧି କବିତାର ଚରମ ଉଦ୍ଦେଶ୍ୟ । ତଦ୍ଦୃଷ୍ଟିରେ ଭାରତର ପ୍ରାଚୀନ ଆଲଂକାରିକମାନେ କବିତାର ପାଶ୍ଚାତ୍ୟ ବିଭାଗ ରୂପ ବିଭାଗ କରି ନାହାନ୍ତି । ସେମାନଙ୍କର ବିଭାଗକରଣ ଅନ୍ୟଥା । ସେମାନଙ୍କ ମତରେ କାବ୍ୟ ତ୍ରିବିଧ: ଉତ୍ତମ, ମଧ୍ୟମ ଓ ଚିତ୍ର । ଗୂଢ଼ୀଭୂତ ବ୍ୟଙ୍ଗ ବା ଧ୍ୱନ୍ୟାତ୍ମକ କାବ୍ୟ ପ୍ରଥମ ଶ୍ରେଣୀସ୍ଥ । ମଧ୍ୟମ ଶ୍ରେଣୀର କବିତାରେ ଗୁଣୀଭୂତ ବ୍ୟଙ୍ଗ୍ୟ ବା ଧ୍ୱନି ଗୌଣତ୍ୱବଟରେ ନିହିତ । ତୃତୀୟ-ଚିତ୍ର ବା ଅଧମ କାବ୍ୟ ଶବ୍ଦାର୍ଥାଲଙ୍କାରାଦିବହୁଳ । ପାଶ୍ଚାତ୍ୟ ସାହିତ୍ୟିକମାନଙ୍କ ପ୍ରୋକ୍ତ ବିଭାଗ ତ୍ରିତୟର ଉପାଦେୟତ୍ୱ ଆଦୌ ଅସ୍ୱୀକାର୍ଯ୍ୟ ନ ହେଲେହେଁ ଚିନ୍ତାଶୀଳ ସାହିତ୍ୟପ୍ରାଣର ଦୃଷ୍ଟିରେ ସେ ବିଭାଗକରଣ ଅର୍ଥବତ୍ତରୂପେ ପ୍ରତୀୟମାନ ହୁଏନାହିଁ । ପୃଥିବୀରେ କୌଣସି ମହାକାବ୍ୟ ପୂର୍ଣ୍ଣ ବିଶ୍ୱଭାବାତ୍ମକ ହୋଇ ନ ପାରେ; ହେଲେ ତହିଁରୁ କେବଳ କେତେକ ପଦ୍ୟ ତାହା ହୋଇପାରେ । କେତେକ ସମାଲୋଚକ ଦାର୍ଶନିକ ଓ ଧର୍ମନୀତି ସମ୍ବନ୍ଧୀୟ କବିତାକୁ ବିଶ୍ୱଭାବ କବିତାଖ୍ୟା ପ୍ରଦାନ କରନ୍ତି । କିନ୍ତୁ ତାହା ମଧ୍ୟ କୌଣସି ଦେଶ ବା ଜାତିବିଶେଷର ଧର୍ମ ଓ ଦର୍ଶନର ଅଙ୍ଗବିଶେଷ । ତନ୍ନିମନ୍ତେ ଏହି ସବୁ ଦୃଷ୍ଟିରେ ବୋଧହୁଏ ଭାରତର ପ୍ରାଚୀନ ଆଲଙ୍କାରିକମାନେ ଏ ବିଭାଗକରଣର ପକ୍ଷପାତୀ ନ ଥିଲେ । ସେ ଯାହାହେଉ ପାଶ୍ଚାତ୍ୟ ଓ ଭାରତୀୟ ଉଭୟବିଧ ବିଭାଗକରଣ ସ୍ୱୀକାର କଲେ—ଦେଶ କାଳ ପାତ୍ର ବିଚାରରେ ନ କଲେ ନ ଚଳେ—ଆମ୍ଭମାନଙ୍କ କବିଙ୍କ ଗ୍ରନ୍ଥର ଉପଯୋଗିତା ଅଛି । ନିମ୍ନରେ ଅମ୍ଭେ କେବଳ କେତେକ ବିଶ୍ୱଭାବାତ୍ମକ କବିତାର ପଂକ୍ତି ଗ୍ରନ୍ଥରୁ ଉଦ୍ଧୃତ କରି ଦେଉଅଛୁଁ ।

ଯାହାର ମନ ଯହିଁ ରମିଥାଇ । ତହୁଁ ସମ୍ପତ୍ତି ତାର ବଳନାହିଁ ॥
ଧନ ଜନ ପଣ ସବୁ ବିରଙ୍ଗ । ନିତୋହେଁ ଲୋଡ଼ଇ ତାହାର ସଙ୍ଗ ॥

*

ସେ ପ୍ରାଣରୁ ପର
ବ୍ୟର୍ଥ ଜୀବନ ତା ବନୁ ତାର ।
(୩୬ ଛାନ୍ଦ ୪ପଦ)

ଏଥୁ ମରଣ ମଣି ଭଲ
କ୍ଷଣକର ସୁଖ ସ୍ୱପନ ସମ୍ପତ୍ତି
ପୁଣିହିଁ ସେହୁ କଳବଳ ।
(୧୫ ଛାନ୍ଦ ୧୪ ପଦ)

ପୁଣ୍ୟରେ ମିଶଇ ପୁଣ୍ୟ ପାପେ ନ ମିଶଇ ହେ
ପାପ ଲଗି ପୁଣ୍ୟ ହୋଏ ଖୀନ

× × × ×

ସହଜେ ସାନଲୋକଙ୍କୁ ବଡ଼ପଣ ଦେଲେ ହେ
ନ ରଖଇ ପ୍ରଭୁଙ୍କ ବେଭାର ।
୨୧ଶ ଛାନ୍ଦ ୪।୫ ପଦ ।

ଛନ୍ଦର ଅନ୍ୟାନ୍ୟାଂଶରେ ପ୍ରାଦେଶିକତା ଦ୍ରଷ୍ଟବ୍ୟ ।

ଦେଶାଙ୍କର ବରପୁତ୍ର ଅଲୌକିକ ପ୍ରତଭାଶାଳୀ କବିସମ୍ରାଟ ଭଞ୍ଜ "ଲାବଣ୍ୟବତୀ'ର ୧ମ ଛାନ୍ଦରେ କହିଅଛନ୍ତି—

"ପଦ ସରଳ ଧ୍ୱନିରେ ମାନସ ମୋହିବ ।"

ଏହି ଉକ୍ତି ଦେବଦୁର୍ଲ୍ଲଭଙ୍କ ରହସ୍ୟମନ୍ତ୍ରଣାରେ ଚରିତାର୍ଥ ହୋଇଅଛି । ଏ କାବ୍ୟର କାନ୍ତ ପଦାବଳୀ ସରଳ, ସହଜ, ସରସ, କୋମଳ ତଥା ଚମତ୍କାର ଭାବପ୍ରତିପାଦକ ।

ଧ୍ୱନି:—ଉଦାହରଣ

ଉତ୍ତରୁ ଆଇଲା ଶୀତ ବିକାଳ କୁମାଷୀ
କାନ୍ତ ଥିଲା କାମିନୀଙ୍କ ଦୂରୁଁ ଅପସରି ।
ଇତ୍ୟାଦି ଇତ୍ୟାଦି ।

ଶବ୍ଦ ଓ ଅର୍ଥର ଶୋଭନସଙ୍ଗତରେ, ପ୍ରାସାଦ, ମାଧୁର୍ଯ୍ୟ, ସୁକୁମାରତା ଓ ସମତାଦି ଗୁଣସାହଚର୍ଯ୍ୟରେ, ସ୍ୱଭାବୋକ୍ତି, ଉପମା, ରୂପକ, ଉତ୍ପ୍ରେକ୍ଷା,

ଅତିଶୟୋକ୍ତି ପ୍ରଭୃତି ଅଲଙ୍କାର ବିନ୍ୟାସରେ କରୁଣ ଶୃଙ୍ଗାରାଦି ରସର ସମ୍ମିଳିତରେ ଏ କାବ୍ୟ ଉତ୍କଳ କାବ୍ୟ-ମଣ୍ଡଳରେ ଅତି ଉଚ୍ଚସ୍ଥାନ ଅଧିକାର କରିବ । ମଥୁରାମଙ୍ଗଳ ଓ ରସକଲ୍ଲୋଳ ତୁଳନାରେ ମଧ୍ୟ ରହସ୍ୟମଞ୍ଜରୀ ଉତ୍କୃଷ୍ଟତର । ଉତ୍କଳ କାବ୍ୟରାଜ୍ୟରେ ରହସ୍ୟମଞ୍ଜରୀର ୧୦ମ ଓ ୧୯ଶ ଛାନ୍ଦ ସଙ୍ଗୀତମହତ୍ତ୍ୱ ହେତୁ ଅପୂର୍ବ ଓ ଅଭିନବ । କବି ୧୮ଶ ଛାନ୍ଦରେ ଷଡ଼-ଋତୁ ବର୍ଣ୍ଣନା କରିଅଛନ୍ତି । ଏପରି ସରସ ଅଥଚ ଅର୍ଥବତ୍ ଋତୁବର୍ଣ୍ଣନା ଉତ୍କଳର କୌଣସି କବି କରି ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚଣ୍ଡୀଦାସାଦିଙ୍କଠାରେ ଆଧୁନିକ ମତାନୁଯାୟୀ ଯେଉଁ ଅଶ୍ଳୀଳତା ପରିଲକ୍ଷିତ ହୁଏ, ତାହା ଏହାଙ୍କଠାରେ ନାହିଁ । ସଙ୍ଗୀତମହତ୍ତ୍ୱରେ ଦେବଦୁର୍ଲ୍ଲଭ, ଜୟଦେବ ଓ ବିଦ୍ୟାପତିଙ୍କର ସମକକ୍ଷ, ତାଙ୍କୁ ଉତ୍କଳର ବିଦ୍ୟାପତି ଆଖ୍ୟା ସ୍ୱଚ୍ଛନ୍ଦରେ ପ୍ରଦାନ କରାଯାଇପାରେ ।

**କବିଙ୍କ ସ୍ଥାନ ନିରୂପଣ ।**

ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ, ଯଦୁମଣି, ଲୋକନାଥ ପ୍ରଭୃତିଙ୍କର କାବ୍ୟମାନଙ୍କରେ ଆଦିରସର ଅନୁଚିତ ବିଶ୍ଳେଷଣ ଓ ବର୍ଣ୍ଣନ ସେମାନଙ୍କ କବିତାର ଉପାଦେୟତାକୁ ମ୍ଳାନ କରି ଦେଇଅଛି । ଯମକ, ଅନୁପ୍ରାସ, ଗୋମୂତ୍ରାଦି ଛନ୍ଦର, ପୃଥକ ଓ ସଂଶ୍ଳିଷ୍ଟରୂପେ ନାନାବିଧ ଅଲଙ୍କାରର, ସ୍ଥାନ ବିଶେଷରେ ଦ୍ୱିଅର୍ଥ ତ୍ରିଅର୍ଥ, ଚତୁରର୍ଥ ପ୍ରକାଶକ ବାକ୍ୟର ଯୋଜନା ଓ କ୍ଳିଷ୍ଟତ୍ୱାଦି ଦୋଷ ଉପରୋକ୍ତ କବିମାନଙ୍କର କାବ୍ୟମାନଙ୍କରେ ଅଳ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । ସେହି କବି ବିଧାତାମାନେ ଗୋଟିଏ ଗୋଟିଏ କାବ୍ୟଜଗତ୍ ସୃଷ୍ଟି କରିଥିଲେ । ଯେପରି ବ୍ରହ୍ମା ଜଗତକୁ ସର୍ବବିଧ ବିଷୟରେ ପୂର୍ଣ୍ଣକରି ନିର୍ମାଣ କରନ୍ତି, କାବ୍ୟସ୍ରଷ୍ଟା ସେହିପରି କାବ୍ୟରେ ସର୍ବବିଧ ବିଷୟମାନଙ୍କୁ ସ୍ଥାନଦେଇ ପାଠକ ଓ ଗ୍ରାହକ-ମାନଙ୍କୁ ସର୍ବଦେଶଦର୍ଶୀ କରିବାରେ ବ୍ରତୀ ହୁଅନ୍ତି । କିନ୍ତୁ କୌଣସି କୌଣସି ବିଷୟର ଅବତାରଣରେ ତାହା ଲୋକଗ୍ରାହ୍ୟ ହୋଇପାରେ ନାହିଁ । ବିଷୟବିଶେଷର ଅତିମାତ୍ର ବିସ୍ତାରରେ ଦୋଷ ସମ୍ଭବେ । ସେହି ଦୋଷ ଅଳ୍ପାଧିକ ପରିମାଣରେ ଉପେନ୍ଦ୍ର, ଦୀନକୃଷ୍ଣ ଓ ଅଭିମନ୍ୟୁଙ୍କଠାରେ ପ୍ରଯୁଜ୍ୟ । କିନ୍ତୁ ଏ ସକଳ ଦୋଷ-ମାନଙ୍କରୁ ଆମ୍ଭମାନଙ୍କର ରହସ୍ୟମଞ୍ଜରୀର କବି ସମ୍ପୂର୍ଣ୍ଣ ଭାବରେ ମୁକ୍ତ । ସେହି କାରଣରୁ ଆମ୍ଭ ମତରେ ଦେବଦୁର୍ଲ୍ଲଭଙ୍କ ସ୍ଥାନ ଏମାନଙ୍କଠାରୁ ସ୍ୱତନ୍ତ୍ର

ଓ ଉଚ୍ଚ କହିଲେ ଯେ ସତ୍ୟର ଅପଲାପ ହେବ, ଏପରି କିଛି ନୁହେ । ଏପରି ସର୍ବାଙ୍ଗସୁନ୍ଦର କାବ୍ୟ ଏପର୍ଯ୍ୟନ୍ତ ଅପ୍ରକାଶିତ ଭାବରେ ଥିବା ଆଶ୍ଚର୍ଯ୍ୟର ବିଷୟ । ମୁଁ ଆଶାକରେ, ଏ ଗ୍ରନ୍ଥ ପ୍ରକାଶ ଓ ପ୍ରଚାରରେ ଉତ୍କଳ ନିଜକୁ ଗୌରବାନ୍ୱିତ ମନେ କରିବ ଏବଂ କହିବ ଯେ ଓଡ଼ିଆ ସାହିତ୍ୟ ସାଧକର ସାହିତ୍ୟ, ପ୍ରାଣବନ୍ତର ସାହିତ୍ୟ ଓ ରସିକର ସାହିତ୍ୟ । ଏପରି ସାହିତ୍ୟରତ୍ନ ଅନ୍ୟ ଦେଶର ପ୍ରାକୃତ ସାହିତ୍ୟରେ ବିରଳ । ଦେବଦୁର୍ଲ୍ଲଭ ! ତୁମ୍ଭେ ଜଣେ ସାଧକ ଥିଲ, ତୁମ୍ଭର ସାଧନାରେ ତୁମ୍ଭେ ଉତ୍କଳର ମୁଖକୁ ଗୌରବାନ୍ୱିତ କରିଥିଲ ଓ କରୁଅଛ । ଆଜି ତୁମ୍ଭର ତ୍ରିଦିବଗତ ଆତ୍ମା ନିସର୍ଗ ବିଳାସମଣ୍ଡଳ ଉପରୁ ଆଧୁନିକ ଉତ୍କଳୀୟଙ୍କ ଉପରେ କଲ୍ୟାଣପୁଷ୍ପ ବର୍ଷଣ କରୁ ଓ ସେମାନଙ୍କ ହୀନପ୍ରାଣତା, ଶ୍ରମକାତରତା, ପଣ୍ଡିତମ୍ମନ୍ୟତା, ବୃଥାଭିମାନିତ୍ୱ, ଶିଷ୍ଟାଚାର-ବିମୁଖତା ତଥା ଧର୍ମଶୂନ୍ୟତା ଦୂର କରି ସେମାନଙ୍କୁ ସିଦ୍ଧିର ସୋପାନରେ ସ୍ଥାପିତ କରୁ, ଏହାହିଁ ଅନୁଗତର ନିବେଦନ ।

ଏହି ଗ୍ରନ୍ଥର ତତ୍ତ୍ୱାଦି ବିଷୟରେ କିଞ୍ଚିତ ଆଭାସ ପ୍ରଦାନ କଲି । ଏହା ଯେ ପ୍ରମାଦଶୂନ୍ୟ ତାହା ବୋଲିଯାଇ ନ ପାରେ । ପ୍ରମାଦ ପ୍ରଦର୍ଶିତ ହେଲେ ତାହାର ପରିହାର ପର ସଂସ୍କରଣରେ କରାଯିବ । ଏହି ଗ୍ରନ୍ଥର ସଂକଳନରେ ମୋର ପ୍ରିୟ ଛାତ୍ରଦ୍ୱୟ ଶ୍ରୀମାନ ଜଗଦାନନ୍ଦ ଓ ଶ୍ରୀମାନ ବଞ୍ଛାନିଧିଚରଣ ମୋତେ ବିଶେଷ ସାହାଯ୍ୟ ପ୍ରଦାନ କରିଅଛନ୍ତି । ସେମାନଙ୍କର ଦୃଷ୍ଟି ଉତ୍କଳସାହିତ୍ୟ ପ୍ରତି ସଦା ଆକୃଷ୍ଟ ଥାଉ, ଏହାହିଁ ପ୍ରଭୁଙ୍କଠାରେ ପ୍ରାର୍ଥନା ।

ଏହି ଦ୍ୱିତୀୟ ମୁଦ୍ରଣରେ ଆମ୍ଭେ ଆଉ ଖଣ୍ଡିଏ ପୋଥିର ସାହାଯ୍ୟ ନେଇ ସ୍ଥାନେ ସ୍ଥାନେ ସାମାନ୍ୟ ପରିବର୍ତ୍ତନ କରିଅଛୁ । ଖଲ୍ଲିକୋଟନିବାସୀ ମୋର ପ୍ରିୟ ଛାତ୍ର ଗିରିଶଚନ୍ଦ୍ରଙ୍କ ପିତା ଏହି ପୋଥି ଖଣ୍ଡିକ ଦେଇ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଟୀକା ମଧ୍ୟ ବର୍ଦ୍ଧିତ ହୋଇଅଛି ।

---

# ରହସ୍ୟ-ମଞ୍ଜରୀ

—❀—

## ପ୍ରଥମ ଛାନ୍ଦ

ଗାହା

ନନ୍ଦନନ୍ଦନ ଶ୍ରୀମଧୁସୂଦନ ମନ ମୋର କଲେ ଉଲ୍ଲାସ ।
ଅତ୍ର ରହସ୍ୟରେ ରହସ୍ୟ-ମଞ୍ଜରୀ ନାମରେ ଗୀତ ପ୍ରକାଶ । ଘୋଷା ।

( ମଙ୍ଗଳ-ଗୁର୍ଜରୀ-ଗୀସ୍ତତେ )

ଶ୍ରୀ ଜୟ ଜଗନ୍ନାଥ ।

ନୀର କ୍ଷୀର ଦଧି ଘୃତ ସୁରା,
ଇକ୍ଷୁ ଲବଣାଦ୍ଧ ସପତସାଗରା । । ଜୟ ଜଗନ୍ନାଥ । ୧ ।

କ୍ରୌଞ୍ଚ ଶାକ ଶାଳ୍ମଳୀ ପୁଷ୍କର,
ପ୍ଲକ୍ଷ କୁଶ ଜମ୍ବୁଦ୍ୱୀପ ଶ୍ରେଷ୍ଠସାର । ଶ୍ରୀ ଜଗନ୍ନାଥ । ୨ ।

ସମନ୍ତକ ନାମେ ତୀର୍ଥ ଆଦ୍ୟ,
ତହିଁ ସମେଶ୍ୱର ଦେବତା ପ୍ରସିଦ୍ଧ । ଶ୍ରୀ ଜଗନ୍ନାଥ । ୩ ।

ତହିଁ ସମ ସମକ୍ଷରେ ଆସି,
ମନ୍ଦ ଫନ୍ଦମଣେ ଯାଇ ପାପ ନାଶି । ଶ୍ରୀ ଜଗନ୍ନାଥ । ୪ ।

ଚେତେନ୍ତ୍ର କ୍ଷେତ୍ର ନୀଳ ମହାଗିର,
ଲକ୍ଷେ ଯୋଜନ ଉର୍ଦ୍ଧ୍ୱ କାୟା କର । ଶ୍ରୀ ଜଗନ୍ନାଥ । ୫ ।

ଶଙ୍କର ଦେବତା ପଞ୍ଚ ସର,
ପଞ୍ଚ ମାଗନ୍ତେ ବରଞ୍ଚ ଗୋପ୍ୟଗିର । ଶ୍ରୀ ଜଗନ୍ନାଥ । ୬ ।

ନୀଳ ମହୀଧର ତା ମୁକୁଟେ,
ନାମ ଶ୍ରୀପୁରୁଷୋତ୍ତମ ଓଡ଼୍ରଦେଶେ । ଶ୍ରୀ ଜଗନ୍ନାଥ । ୭ ।

କଳପମହୀରୁହ ନିକଟେ,
ମୁକ୍ତି ମଣ୍ଡପବଚତ୍ର ଥାନ ଘଟେ । ଶ୍ରୀ ଜଗନ୍ନାଥ । ୮ ।

ସିଦ୍ଧ ଗଣପତି ବଟମୂଳେ,
ସିଦ୍ଧ ପ୍ରଚଣ୍ଡନନ୍ଦନ ବସେ ତାଳେ । ଶ୍ରୀ ଜଗନ୍ନାଥ । ୯ ।

ବଟ ରୋହିଣୀକୁଣ୍ଡ ଉତ୍ତରେ,
ପ୍ରଭୁ ବିଜେ ବଡ଼ଦେଉଳ ଭିତରେ । ଶ୍ରୀ ଜଗନ୍ନାଥ । ୧୦ ।

ଅଷ୍ଟଦଳ କମଳ କେଶରେ,
ତଥି ମହାଯୋଗପୀଠର ଶିଖରେ । ଶ୍ରୀ ଜଗନ୍ନାଥ । ୧୧ ।

ଖୀନକଟି ନେତର କାଛେଣୀ,
ଚକା ଚରଣ ବଇଠି ତଟ କଣି । ଶ୍ରୀ ଜଗନ୍ନାଥ । ୧୨ ।

ହୃଦସ୍ଥଳଲାଞ୍ଛନ ଶ୍ରୀବତ୍ସଙ୍କ,
ଗନ୍ଧ ଚନ୍ଦନ ଚର୍ଚ୍ଚିତ ଗୁରୁଅଙ୍ଗ । ଶ୍ରୀ ଜଗନ୍ନାଥ । ୧୩ ।

କଉସ୍ତୁଭମଣି କଣ୍ଠତଟ,
ହେମ ମଣି ରତ୍ନ ହୃଦେ ଝଟ ଝଟ । ଶ୍ରୀ ଜଗନ୍ନାଥ । ୧୪ ।

ଦଇତଦଳନ ଭୁଜଦଣ୍ଡ,
ଶଙ୍ଖ ଚକ୍ର ଜ୍ୟୋତି ବିଧୁ ମାରତଣ୍ଡ । ଶ୍ରୀ ଜଗନ୍ନାଥ । ୧୫ ।

ଅଧର ପ୍ରବାଳ ଜବାରୁଣ,
ଚଣ୍ଡକର ଜିଣି କୁଣ୍ଡଳକରଣ । ଶ୍ରୀ ଜଗନ୍ନାଥ । ୧୬ ।

ଶ୍ୱେତପଦ୍ମ ଲୋଚନ ବିଶାଳ,
ଲୁବ୍ଧ ମଧୁପାନେ ମଧୁପ ନିଚଳ । ଶ୍ରୀ ଜଗନ୍ନାଥ । ୧୭ ।

ନବଭ୍ର ଜଳଦ ଝଳ ଶ୍ୟାଳ,
ନୀଳସ୍ଥଳ ବିନ୍ଦୁ ଇନ୍ଦୁ ଝଳମଳ । ଶ୍ରୀ ଜଗନ୍ନାଥ । ୧୮ ।

କିରୀଟ ମୁକୁଟ ଅବତଂସ,
ଭକ୍ତଜନ ଅଘତମିର ବିନାଶ । ଶ୍ରୀ ଜଗନ୍ନାଥ । ୧୯ ।

ଶିରେ ଶୋଭି ଦର୍ପଣାର ଚୂଳ,
ନାନା କୁସୁମେ ତୁଳସୀ ଧଣ୍ଡାମାଳ । ଶ୍ରୀ ଜଗନ୍ନାଥ । ୨୦ ।

ସମ୍ମୁଖର ଗରୁଡ଼ ଯୋଡ଼ି କର,
କଲା ଶ୍ରୀମୁଖଙ୍କୁ ଦୃଷ୍ଟିଣ କିଙ୍କର । ଶ୍ରୀ ଜଗନ୍ନାଥ । ୨୧ ।

ସିଦ୍ଧ ରୁଦ୍ରଗଣ ବିଦ୍ୟାଧର,
ସେବା ଖଟନ୍ତି ଯୋଗେ ଯେ ଯାହାର । ଶ୍ରୀ ଜଗନ୍ନାଥ । ୨୨ ।

ଛତ୍ରାଲମ୍ବ ଜଳଦ ଡାମ୍ବର,
କୋଟି କୋଟି ସିନ୍ଧୁ-ଲହରୀ ଶୃମର । ଶ୍ରୀ ଜଗନ୍ନାଥ । ୨୩ ।

ଭେରୀ ଶଙ୍ଖ ଉପାଙ୍ଗ କାହାଳ,
ବେଣୁ ବୀଣା ତାଳ ମୃଦଙ୍ଗ ଚହଳ । ଶ୍ରୀ ଜଗନ୍ନାଥ । ୨୪ ।

ଗାବନ୍ତି ଗନ୍ଧର୍ବେ ମିଳି ସଙ୍ଗେ,
ମଧ୍ୟେ ନାଚନ୍ତି କନ୍ୟା ନାନାରଙ୍ଗେ । ଶ୍ରୀ ଜଗନ୍ନାଥ । ୨୫ ।

ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗ,
ନାନା ଗତି ଭ୍ରାନ୍ତି ସ୍ତୁତି ତରଙ୍ଗ । ଶ୍ରୀ ଜଗନ୍ନାଥ । ୨୬ ।

ସୁଭଦ୍ରା ସୁଦର୍ଶନ ଶ୍ରୀପତି,
ବଳଦେବ ଆଦି ଚତୁର୍ଦ୍ଧା ମୂରତି । ଶ୍ରୀ ଜଗନ୍ନାଥ । ୨୭ ।

ଶ୍ୱେତ ପୀତ ରକ୍ତ ନୀଳ ଗୃଣ,
ଚତୁର୍ବର୍ଣ୍ଣେ ଏକ କଳେବରଧାରୀ । ଶ୍ରୀ ଜଗନ୍ନାଥ । ୨୮ ।

ସହସ୍ର ବଦନେ ବେଦଧାରୀ,
କୋଟି କୋଟି କଳ୍ପେ କହି ତ ନପାରି । ଶ୍ରୀ ଜଗନ୍ନାଥ । ୨୯ ।

ମୋ ସ୍ତୁର ପାମର ମୂଢ଼ମତି,
ତାହା କହିବାକୁ କିସ ମୋ ଶକତି । ଶ୍ରୀ ଜଗନ୍ନାଥ । ୩୦ ।

କେବଳ ଭରସା ମୋର ଏହି,
ଦୀନବନ୍ଧୁ ବୋଲି ନାମ ଅଛି ବହି । ଶ୍ରୀ ଜଗନ୍ନାଥ । ୩୧ ।
ଆରତଭଞ୍ଜନ ବଜ୍ରପେଞ୍ଜା,
କୋଟି ବ୍ରହ୍ମାଣ୍ଡେ ଉଡ଼ୁଛି ଯାର ବାନା । ଶ୍ରୀ ଜଗନ୍ନାଥ । ୩୨ ।
ଏବେ ଯା ସ୍ଫୁରୁଛି ମୋର ମନ,
ତାହା କହିବାକୁ ହୁଅ ପରସନ୍ନ । ଶ୍ରୀ ଜଗନ୍ନାଥ । ୩୩ ।
ଆନ ମୁଁ ଯେ କିଛି ମାଗୁନାହିଁ,
ତୁମ୍ଭ ଚରଣେ ଶରଣ ଖାବଛାହି । ଶ୍ରୀ ଜଗନ୍ନାଥ । ୩୪ ।
ରହସ୍ୟ-ମଞ୍ଜରୀ ନାମେ ଗୀତ,
ଆଜ୍ଞା ହୋଇଲେ ମୁଁ କରିବି ଉକତ । ଶ୍ରୀ ଜଗନ୍ନାଥ । ୩୫ ।
ଛନ୍ଦବନ୍ଧ ବିବିଧ ରସେ ଛନ୍ଦ,
ମୋର ହୃଦେ ବସେ କରିବା ଶୋଧନ । ଶ୍ରୀ ଜଗନ୍ନାଥ । ୩୬ ।
ସରସ୍ୱତୀରୂପେ ବାକ୍ୟଦେବୀ,
କଣ୍ଠେ ତୁଲମ୍ଭ ଅଛନ୍ତି ବାକ୍ୟ ସ୍ରବି । ଶ୍ରୀ ଜଗନ୍ନାଥ । ୩୭ ।
ସର୍ବସୁଖଦାୟିନୀ ଚରଣେ,
ଦେବ ନରନ୍ତରେ ପଶିଲି ଶରଣେ । ଶ୍ରୀ ଜଗନ୍ନାଥ । ୩୮ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଛନ୍ଦେ,
କଳାନିଧି ଚନ୍ଦ୍ରମା ଚରଣାରବିନ୍ଦେ,
ଦ୍ୱିତୀୟଛନ୍ଦ ବର୍ଣ୍ଣିଲେ କେବଳ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉ ଶ୍ରୀ ଜଗନ୍ନାଥ । ୨ ।

---

୩୫—କ, ଖ, ଓ ଘ ମୁଁ ଶବ୍ଦ ଠାଇ ଦେଇ ୨ୟ ପଦକୁ ୧୧ ଅକ୍ଷରରେ ପଢ଼ନ୍ତି ।

୩୭—୨:—ପ୍ରଣତ (ଗଘ, ଚ) ଅକ୍ଷରୁ (ଖ, ଗ, ଚ,) କାବ୍ୟରସ (ଘ) ।

# ଦ୍ୱିତୀୟ ଛାନ୍ଦ ।

( ବସନ୍ତ ବରେଣ ଗୀୟତେ । କଳଶା ବାଣୀ । )

ଏକଦନେ କୋଳ୍ପ ମନ୍ଦରେ ଜଗନ୍ନାଥ ।
ମଣିମୟ ପଲଙ୍କ ଉପରେ ବସିଜାତ ।
ବେଳ ଜାଣି ରୁକ୍ମଣୀ ରମଣୀ-ଶିରୋମଣି ।
ପଦ ପାଶେ ଏକଲ ପ୍ରବେଶ ଠାକୁରାଣୀ ।୧।

ଶିରେ ଶ୍ରୀଚରଣ ଲଗାଇ ଶୁଭ୍ରକେଶୀ ।
କ୍ରୋଧେ ଗଦଗଦ ବାମା ବଚନ ପ୍ରକାଶି ।
ଶୁଣ ପ୍ରାଣେଶ୍ୱର ଏକ ବଚନ ମୋହୋର ।
କହିବାକୁ ଭୟେ ମନେ ବହୁତ ବସ୍ତୁର ।୨।

ବସୁରୁ ବସୁରୁ ତ ବହୁତ ଦନ ଗଲା ।
କହିବାକୁ ଶକ୍ୟ ଏଥି କାହାର ନୋହିଲା ।
ମାତା ପିତା ଉଗ୍ରସେନ ଉଦ୍ଧବାଦ ଯେତେ ।
ସଭିଙ୍କ ହୃଦେ ପ୍ରଭୁ ଚନ୍ତା ଅପ୍ରମିତେ ।୩।

ଷୋଳ ସହସ୍ର ଅଷ୍ଟ ନାୟିକା ଯୁବତୀ ।
ଅଛନ୍ତି ଅନେକ ବାମା ସୁଜାଣ ସୁମତି ।
ସକଳ କାମିନୀଙ୍କ ବକଳଭାବ ଦେଖି ।
ଅଇଲି ଶ୍ରୀମୁଖକୁ ଭୟେ ସଙ୍କୋଚ ଉପେକ୍ଷି ।୪।

କସ ଅର୍ଥେ ପ୍ରଭୁ ହେ ବରସ ତୁମ୍ଭ ମନ ।
କେହୁଣସି ସୁଖକୁ ନ କର ଅବଧାନ ।
ଦ୍ୱାରବତୀ ଭୁବନେ କେବଣ ସୁଖ ନାହିଁ ।
ସର୍ବସୁଖ ତେଜି ମନ ରମାଇଲ କାହିଁ ।୫।

---

୧—୨ :—ମଣିମୟ କଣୟ ପଲଙ୍କେ—ଜ

୨—୧ :—ରମା । (କ, ଖ, ଚ) । ୫—୨ :—କେହୁଣିହି (ଚ) ।

*

ହାତୀ ଛତୀ ପାଦାନ୍ତ ଗ୍ରହନ୍ତ ରଥ ରଥୀ ।
ଯାତବଂଶ ଆଦ ଭୂମ୍ଭ କେ କହୁ ସମ୍ପତ୍ତି ।
ଟେଡ଼ ହୋଡ଼ ନଟ ଭଟ ନାନାରଙ୍ଗ କେଳ ।
ଗାବନ୍ତ ଗନ୍ଧର୍ବେ ଯେ ନାଚନ୍ତ ବଦ୍ୟାଧରୀ ।୬।
ଖଟଣି ସେବକ ଯେତେ ଗ୍ରାମୁରେ ଅଛନ୍ତ ।
ଯେ ଯାହାର ବେଳକାଳେ ଆଜ୍ଞା ନ ଲଙ୍ଘନ୍ତ ।
ଯୂଥ ଯୂଥ ଅନ୍ତରଙ୍ଗୀ ପ୍ରଧାନ ନାୟିକା ।
ନବୀନ ଯୌବନୀ ରସ ରହସ୍ୟେ ଅଧିକା ।୭।
ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗେ କୁତୂହଳୀ ।
ତ୍ରିଜଗମୋହନୀ ଯେ ଅଟନ୍ତି ସବୁବାଳୀ ।
ମୁଖ ଖୋଲ ନ ଗ୍ରହ୍ନି ନ କହ କମ୍ପ କଥା ।
ହାସ୍ୟ ରସ ଦେଖିଲେ ତଳକୁ ପୋତ ମଥା ।୮।
ହୁଁ ହୁଁ କାର କରଣ ନଶ୍ୱାସ ଉଚ୍ଚେ ଗ୍ରଡ଼ ।
କାହାକୁ କଛ ନ କହ କଥା କର ଗାଢ଼ ।
କାହାର ନ ଘେନ ସେବା କ୍ଷଣକେ ବରଙ୍ଗ ।
ଶୟନ ବେସନ ସୁଖ ସବୁ ଅପ୍ରସଙ୍ଗ ।୯।
ଚନ୍ଦ୍ରଃସମ ଲେପନ୍ତେ ବଦନ ମାଡ଼ ଶୁଅ ।
ଲେଉଟାଇ ଲୋଡ଼ନ୍ତେ ମନ୍ଦରୁ ଗରୁ ହୁଅ ।
କ୍ଷଣେ ଉଠ କ୍ଷଣେ ବସ କ୍ଷଣେ ହେଠ ମାଥ ।
କ୍ଷଣେ କ୍ଷଣେ ବସୁନ୍ଧେ କପାଳେ ମାର ହାତ ।୧୦।
ଊର୍ଦ୍ଧ୍ୱ ମୁଖ ହୋଇଣ ନଶ୍ୱାସ ଖୋଲ ଗ୍ରଡ଼ ।
କର ଶିରେ କସ୍ତୁଡ଼ ପଲଙ୍କ ତଳେ ପଡ଼ ।

---

୬—୩—ସ୍ୱେଟ, (ଘ) ଭଟ—
୭—୬—"ପ୍ରଭୁମନ ହରବାକୁ ଯୋଗତା ଅଛନ୍ତ (ଘ, ଚ, ଜ)
୭—୪—ଯୌବନୀ ରସ ରଭସେ ଚ, ଜ ।
୯—୧—ଝଙ୍କାର୍--

କି ଅର୍ଥେ ଶରୀର କ୍ଷୀଣ କର ଦାମୋଦର ।
ଦଣ୍ଡମଣ୍ଡ କରି ପ୍ରଭୁ ଶ୍ରେଷ୍ଠ ପରତ୍ପର ।୧୧।
ଯେବେ ନ କହିବ ପ୍ରଭୁ ଏ ସନ୍ଧ ବିସ୍ତର ।
ମରିବୁଁ ସକଳ ବାମା ସତ୍ୟ ଏ ଆମ୍ଭର ।
ରୁକ୍ମିଣୀ ବିନୟ-ବୋଧ ଶୁଣି ଜଗନ୍ନାଥ ।
ଉଠି ବସି ତୋଳି ପ୍ରଭୁ କଲେ କୋଳାଗତ ।୧୨।
ପ୍ରଭୁ ଠାକୁରାଣୀ ଏକ ଆସନେ ବିଜୟେ ।
ପ୍ରବୋଧନା ବଚନ କହନ୍ତି ଦେବରାଏ ।
ଲକ୍ଷ୍ମୀନାରାୟଣ ବେନି ଚରଣ କମଳେ ।
ସର୍ବଦା ଚିନ୍ତଇ ଦେବ ନୟନ ଭ୍ରୂ ସଲେ ।୧୩।
ଇତି ଶ୍ରୀ ରହସ୍ୟମଞ୍ଜରୀ ଦ୍ୱିତୀୟ ଛାନ୍ଦେ,
ରୁକ୍ମିଣୀ ରମଣ ଶ୍ରୀଚରଣ ବନ୍ଦେ,
ତୃତୀୟ ଛାନ୍ଦ ବର୍ଣ୍ଣନେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉ ରୁକ୍ମିଣୀ ଦେବୀର କାନ୍ତ ।୧୪।



## ତୃତୀୟ ଛାନ୍ଦ ।

—:():—

ରାଗ—ବରାଡ଼ି । ଆଷାଢ଼ ଶୁକ୍ଳ ବାଣୀରେ ଗାଇବ ।

ବୈଦର୍ଭରାଜପ୍ରସୂତା ସୁରତ,
କହନ୍ତି ଯେ ପ୍ରଭୁ ଶ୍ରୀ ଜଗନ୍ନାଥ,
ଶୁଣ ରମଣୀ-ଶିରୋମଣୀ ପ୍ରିୟା,
ନିଗୂଢ଼ କଥା ପଚାରିଲ ଯାହା,
ସେ ଗୋପ ବାରତା,
ମନ ଯେ ଜାଣଇ ହୃଦୟ ବ୍ୟଥା । ୧ ।

ପ୍ରାଣରୁଁ ଅଧିକ ଅଟଇ ଯେହୁ,
ହୃଦବେଦନା ଦମ୍ଭାଳଇ ସେହୁ,
ଆମ୍ଭର ଏଥି ପ୍ରାଣସଖୀ ନାହିଁ,
ତେଣୁ ନ କହୁ ହୃଦଉଛୁ ଦେହି,
ସ୍ନେହ ପ୍ରମାଦ-ବ୍ୟଥା,
ପ୍ରାଣ ମୂରୁଛୁ ନ କହୁ ସେ କଥା । ୨ ।
ଅସଙ୍ଗେ ପଡ଼ି ଯାଉଅଛୁ ମର,
ଦୁଷ୍କାଳେ ବନ୍ଧୁକୁଁ ଏ ଦ୍ୱାରପୁରୀ,
ଲଲାଟେ ଲେଖିଅଛୁ ଯାହା ବନ୍ଧୁ,
ଦୁଃଖକାଳେ ସୁଖ ଲୋଡ଼ି କ ପାଇ,
କ କହିବା ଆମ୍ଭେ,
ଶୁଣିଲେ ପରତେ ନ ଯିବ ତୁମ୍ଭେ । ୩ ।
ଯାହାର ମନ ଯହିଁ ରମି ଥାଇ,
ତହୁଁ ସମ୍ପତ୍ତି ତାର ବଡ଼ ନାହିଁ.
ଧନ ଜନ ପଣ ସବୁ ବରଙ୍ଗ,
ନତୋ୍ୟହେଁ ଲୋଡ଼ଇ ତାହାର ସଙ୍ଗ,
ସେ ପ୍ରାଣରୁ ପର,
ସ୍ୱଅର୍ଥ ଜୀବନ ତା ବଳୁ ତାର । ୪ ।
ଦୁଇ ମନକୁ ଦୁହେଁ ଟକାଟକେ,
ଭଲନ୍ତ ପ୍ରୀତ ରୁଚି ଥାଇ ନିକେ,
ବାଦେ ବଢ଼ାନ୍ତ ଅଖଣ୍ଡ ପୀରତ,
ପ୍ରାଣରୁଁ ଅଧିକ କର ସୁକୃତ,
ସେ ସୁକୃତ ଜନ,
ପୀରତ ଲଗି ମୂରୁଛନ୍ତ ପ୍ରାଣ । ୫ ।
ପ୍ରଭୁ ମୁଖୁଁ ଶୁଣି ଦେବୀ ରୁକ୍ମଣୀ,
ମନର ମନେ ପୁଣ ପୁଣ ଗୁଣି,

ଏ ତ ଅନେକତ ଚକ୍ରତ କଥା,
ଅଧିକେ ହୃଦକୁ ଲଗିଲା ବଥା,
ମୁଁ କିସ କରିବ,
ଏବେ ସେ ଗରଳ ଖାଇ ମରିବି । ୬ ।
ଏହାଙ୍କ ପ୍ରାଣସଙ୍ଗୀ ବଳଦେବେ,
ସଙ୍ଗେ ସଙ୍ଗେ ସେ ତ ଅଛନ୍ତି ଏବେ,
ଉଦ୍ଧବ ଅକ୍ରୂର ସାତ୍ୟକି ଘନ,
ଯାଦବଗଣ ମଧ୍ୟେ ଏହୁ ଜ୍ଞାନୀ,
ଏମାନେହେଁ ସହି,
ମନ ନ ଜାଣିଲେ ପାରୁନି ଥାଇ । ୭ ।
ସ୍ତ୍ରୀ ମଧ୍ୟରେ ବଡ଼ପାଟ ମୁହିଁ,
ମୋହୋର ପଛେ ଆଉ ଯେ ବସାଇ,
ଏକୁ ଆରେକ ରୂପ ଗୁଣେ ସରି,
ଏହାଙ୍କ ମନ ନ ପାରିଲି ହରି,
ଧିକ ଆତ୍ମଗୁଣ,
ଜୀବନ ଯୌବନ ବୃଥା କାରଣ । ୮ ।
ସ୍ତ୍ରୀ ଯେତେକ ଛନ୍ତି ଏଠାରେ,
ଜଣେହେଁ କେହୁ ନାହିଁ ବାପ ଘରେ,
ମନ ସଙ୍ଗୀ ଆଉ ମୁ ଛିଛି କାହିଁ,
ଏଡ଼େ ବିପତ୍ତିରେ କଣ୍ଠରେ ନାହିଁ,
କର୍ମା ନ ଲେଡ଼ନ୍ତି,
ଦ୍ରବ୍ୟମାନେହେଁ କାହାକୁ ଡରନ୍ତି । ୯ ।
ସେହୁ କେମନ୍ତେ ରହିଲା ମୁରୁଛି,
ଏହାଙ୍କ ବିନୁ ଦେହ ଧରିଅଛି,
ଏଡ଼େ ଲୋକକୁ କି ଦୋଷେ ଛାଡ଼ିଲେ,
ଗୁଣ ହେଜି ବୃଦ୍ଧି ଏବେ ଲେଡ଼ିଲେ,

ଜାଣିମା କେମନ୍ତେ,
କେ ଅବା ଅଛୁ କାହିଁ କଉମତେ । ୧୦ ।
ଗୋପପୁରେ ଥିଲେ ଯେବଣ କାଳେ,
ନାନା କ୍ରୀଡ଼ା କଲେ ଗୋପୀଙ୍କ ମେଳେ,
ତହିଁ ଅଛୁ ଅବା କେଉଁ ସୁହାଗୀ,
ଏହାଙ୍କ ମନୋହାରୀ ପ୍ରାଣସଙ୍ଗୀ,
ସେ ଶ୍ରେଷ୍ଠନାୟିକା,
ହୋଇଲେ ହୋଇ ସେ ଅବା ରାଧିକା । ୧୧ ।
ଯେତେ ହୋଇଲେ ଗହୁଡ଼ୁଣୀ ନାରୀ,
ନ ଯୋଗାଇଛନ୍ତ ରାଜକୁମାରୀ,
ଏହୁ ତ ମନକୁ ନ ଆସଇ ନାହିଁ,
ସେ ପୁଣି ପରପୁରୁଷ ଅଟଇ,
ତା କାହିଁ ଭରରେ
ସେରନ୍ଧ୍ରୀ ହୋଇ କୃ ଘର କରିବେ । ୧୨ ।
ଷୋଳସହସ୍ରଏ ଦେବକୁମାରୀ,
କେତେ ରାବଣ ବଳେ ନେଲା ହରି,
ବସ୍ତୁ ବର ମନେ ବରି ଯୁବତୀ,
କେବେହେଁ ତାକୁ ନୋହେ ସନମତି,
ରାବଣ ଅନ୍ତରେ,
ପୁଣି ସେ ନାରୀ ଗଲେ ସ୍ୱର୍ଗପୁରେ । ୧୩ ।
ନାରକାସୁର ପୁଣି ନେଲା ହରି,
ଏହୁ ପ୍ରଭୁ ତାଙ୍କ ମାନ ଉଦ୍ଧରି,
ନାରକା ମାରି ଦ୍ୱାରକା ଆଣିଲେ,
ସୁକୃତ ଦେଖି ତା ବଶ ହୋଇଲେ,
ଏ ଯହିଁ ନ ରୁଚ,
କପଟ ଯୁବତୀ କେମନ୍ତେ ରୁଚ । ୧୪ ।

ଗୋପକନ୍ୟା ବୋଲି ବୋଲନ୍ତି ଯାହା,
କେମନ୍ତେ ଅବା ନ ଲୋଡ଼ିବେ ତାହା,
ଘର କରୁଛନ୍ତି ଭର୍ତ୍ତାଙ୍କ ଘେନି,
ଦାଣ୍ଡ ଗୁଆଲୀ ବପଡ଼ କାମିନୀ,
ବାଲକାଳ ସଙ୍ଗ,
କେବଳ ତାହିଁ ଥିବ କଥା ରଙ୍ଗ । ୧୫ ।
କି ଅବା ହୋଇଲେ ହୋଇବ ଏହି,
ବସ୍ତୁରେ ଆଉ ଆନ ନ ଦିଶଇ,
ବସ୍ତାର କଥା କହାଇ ଆଣିମା,
ତେବେ ସିନା ଏଥି ତଥ୍ୟ ଜାଣିମା,
ମହିମା ଯାହାର,
ବ୍ରହ୍ମାଦି ଶଙ୍କରଙ୍କୁ ଅଗୋଚର । ୧୬ ।
ଏସନ ହୃଦରେ ପାଶ୍ୱ ସୁନ୍ଦରୀ,
କହନ୍ତି ପ୍ରଭୁ ଶ୍ରୀ ଚରଣ ଧରି,
ଶୁଣ ମହାପ୍ରଭୁ କରୁଣାନିଧି,
ଏ ତ ଅତିବଡ଼ ଦୁର୍ଗମ ସନ୍ଧି,
ଫେଡ଼ି କହ ତୁମ୍ଭେ,
ଯେମନ୍ତେ ପରତେ ପାଇବୁ ଆମ୍ଭେ । ୧୭।
ପ୍ରଭୁଙ୍କ ମନକୁ ବନ୍ଧିଲ ଯେହୁ,
ଆମ୍ଭ ଉପରେ ଅଧିକାରୀ ସେହୁ,
ତାଙ୍କଠାରୁ ଶିଖି ଶ୍ରୀଅଙ୍ଗ ସେବା,
ପ୍ରଭୁ ମନ ତୋଷି ଜାଣିମୁଁ ଅବା,
କୃପାକର ତୁମ୍ଭେ,
ତାଙ୍କ ଚରଣେ ଖଟିଥିବୁ ଆମ୍ଭେ, । ୧୮ ।
ନାମ କେବଣ କାହିଁ ତାଙ୍କ ବାସ,
କି ଅବା ସ୍ତ୍ରୀ କି ଅବା ପୁରୁଷ,

କହୁବା ଗୋସାଇଁ ଏଥି ସନ୍ଧାନ,
ଶୁଣି ସନ୍ଦେହ ଛଡ଼ୁ ମୋର ମନ,
ମୁଁ ଦାସୀ ତୁମ୍ଭର,
ମୋହୋଠାରେ କୃପା କର ଅନ୍ତର । ୧୯ ।
ଶୁଣି ସନ୍ତୋଷ ହୋଇଲେ ମୁରାର,
ଅନ୍ତର୍ଗତ କଥା ଅନ୍ତେ ସହର,
ଶୁଣ ଗୁଣବତୀ ପ୍ରାଣର ପ୍ରିୟା,
ଯାହା ପଚ୍ଛରିଲ କହୁରୁଁ ତାହା,
ତୁମ୍ଭ ହିତକଥା,
ବୁଝିଲେ ଯେବେ ମନେ ନାହିଁ ବ୍ୟଥା । ୨୦ ।
ଏବେ ଆଜ ତୁମ୍ଭ ପୁରକୁ ଯାଅ,
ଯୁବତୀମାନଙ୍କୁ ବୁଝାଇ କହ,
ସମସ୍ତେ ପୁଣି ତ ହୋଇବ ଶ୍ରୋତା,
କାହୁଁ ଛୁଡ଼ିବ ଆମ୍ଭ ମନ ବ୍ୟଥା,
ତୁମ୍ଭେହେଁ ଭଣିବ,
ତୁମ୍ଭ ଯୋଗୁ ଆମ୍ଭ ତାପ ହାରିବ । ୨୧ ।
ଶ୍ରୀମୁଖ ସନ୍ଦେଶ ପାଇ ସୁନ୍ଦରୀ,
ବିଜୟ କଲେ ସତ୍ୟଭାମା ପୁରୀ,
ସବୁ ସପତ୍ନୀମାନଙ୍କୁ ଗଇ,
ପ୍ରଭୁ ଚରିତ କହିଲେ ବୁଝାଇ,
ସବୁହେଁ ଚକିତ,
ସେହି କଥାରେ ପୁହାଇଲେ ରାତ୍ର । ୨୨ ।
ନିଶି ପାଇଲା, ନିତ୍ୟକର୍ମ ସାରି,
ପ୍ରଭୁ ଛାମୁକୁ ଚଳିଲେ ସୁନ୍ଦରୀ,
ପୁର ହରିର ଦର୍ଶନ କରନ୍ତି,
ଶ୍ରୀମୁଖ ଦର୍ଶନେ ପାପ ହରନ୍ତି,

ପ୍ରିୟା ପତ୍ର ପାଦେ,
ଶରଣ ଗଲ ଦେବ ଅପ୍ରମାଦେ ।୨୩ ।
ଇତି ଶ୍ରୀ ରହସ୍ୟ-ମଞ୍ଜରୀ ତୃତୀୟ ଛାନ୍ଦେ,
ପୁବଷାରହ୍ଲାଦ ଦର୍ଶନାଦି ବନ୍ଧେ,
ଚତୁର୍ଥ ଛାନ୍ଦ ବର୍ଣ୍ଣିବେ କେବଣ କେବଣ,
କହିବାକୁ ଆଜ୍ଞା ହୋଇ ଶ୍ରୀଭଗବାନ । ୩ ।

---

## ଚତୁର୍ଥ ଛାନ୍ଦ ।

*।*।*

ଭୂପାଳ ବୃଗେଣ ଗୀୟତେ ।
ଜୟ ଜୟ ତୁ ଜୟ ପରମାନନ୍ଦ,
ଜୟ ଅନାଦି ଅଚ୍ୟୁତ ଆଦିକନ୍ଦ । ୧ ।
ଜୟ ଜୟ ତୁ ଜୟ କରୁଣାସିନ୍ଧୁ,
ଜୟ ଯାଦବକୁଳ-କୁମୁଦ-ଇନ୍ଦୁ । ୨ ।
ଜୟ ଜୟ ତୁ ଜୟ ସଙ୍କଟପେଣ୍ଠା,
ଜୟ ଶରଣରକ୍ଷଣ ଯାର ବାନା । ୩ ।
ଜୟ ଜୟ ତୁ ଜୟ ଦେବାଧିରାଜ,
(ଜୟ) ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ । ୪ ।
ଜୟ ଜୟ ତୁ ଜୟ ପରମଶୋଭା,
ଜୟ କୋଟିକନ୍ଦର୍ପ-ମୂରତି-ଆଭା । ୫ ।
ଜୟ ଜୟ ତୁ ଜୟ ବୈକୁଣ୍ଠବାସ,
ଜୟ ମୁନିଙ୍କ ମନ-ସରସୀ-ହଂସ । ୬ ।

---

ନୀଲଗିରି ଚରିତ ସମ ଦରଶନ ବାଣୀରେ ଗାଇବ (ଘ)
ନଟ ନାରାୟଣ ବାଣୀରେ ଗାଇବ (ଚ) ।
୨-୧-(ଗ) ପୋଥିରେ ତୁ ସ୍ଥାନେ ହେ ପଠିତ ।

*

ଜୟ ଜୟ ତୁ ଜୟ ଗରୁଡଗଣ୍ଡା,
ଜୟ ଦନୁଜକୁଳ-ପ୍ରବଳ-ଭଣ୍ଡା । ୭ ।

ଜୟ ଜୟ ତୁ ଜୟ ପୁରୁଷବର,
ଜୟ ଯାର କିଙ୍କର ବ୍ରହ୍ମାଦି ସୁର । ୮ ।

ଜୟ ଜୟ ତୁ ଜୟ ବିବୁଧ ଈଶେ,
ଜୟ ଅଚ୍ୟୁତାଗ୍ରଜ-ଅନୁଜ ପ୍ରବେଶେ । ୯ ।

ଜୟ ଜୟ ତୁ ଜୟ ମହିମାମେରୁ,
ଜୟ ଭଗତ ନିମନ୍ତେ ଅବତରୁ । ୧୦ ।

ଜୟ ମୀନମୂରତି ଜଳଧିବ୍ୟାପୀ,
ଜୟ କୂରୁମ ବରାହ ମହାରୂପୀ । ୧୧ ।

ଜୟ ନରକେଶରୀ ବାମନ ହରି,
ଜୟ ପରଶୁଧର କୋଦଣ୍ଡଧାରୀ । ୧୨ ।

ଜୟ ହଳଧରରୂପ ତୁମ୍ଭେ ସ୍ୱାମୀ,
ଜୟ ବଉଧ କଲକି ଅନ୍ତର୍ଯାମୀ । ୧୩ ।

ଜୟ ବରଲୋଚନ-ଚକୁରଙ୍କା,
ଜୟ ରାବଣ ମାରି ନିଆଅ ଲଙ୍କା । ୧୪ ।

ଜୟ ପୁତନାଥନ-ପରାଣପିଆ,
ଜୟ ପାଦେ ଶକଟା ପରାଣନିଆ । ୧୫ ।

ଜୟ ତୁ ବକାଚର ବଶୁକଚଢ଼ା,
ଜୟ ଯୋଢ଼ାଢ଼ କଣ୍ଠୀ-ଗିରିବମୋଡ଼ା । ୧୬ ।

ଜୟ ଅଜଗର ବର ମୁଣ୍ଡଫୋଡ଼ା,
ଜୟ କାଳନ୍ଦୀ-କାଳୀ-ମଉଳଚଢ଼ା । ୧୭ ।

ଜୟ ଇନ୍ଦ୍ରବାଦେ ମନ୍ଦରଧର,
ଜୟ କେଶୀଦଇତ ମନ୍ଥନକର । ୧୮ ।

ଜୟ କୁଜପଲଖା ମାତୃଜ୍ଞପିଟା,
ଜୟ ମାଲମାରୁଆ ମହଲା-ଲୋଟା । ୧୯ ।
ଜୟ ଅଶେଷ କୋଟି ବ୍ରହ୍ମାଣ୍ଡନାଥ,
ତୁମ୍ଭ ମହିମା କେହୁ କରିବ ଅନ୍ତ । ୨୦ ।
ଯାର ପାଦ ପଦ୍ମଁ ମକରନ୍ଦ ଝର,
ଗଙ୍ଗାଜଳ ସ୍ୱରୂପେ ଜଗତ ତାର । ୨୧ ।
ଏହି ପ୍ରକାରେ ଚରଣେଁ ଶିରଘାଏ,
କେତେଠାରୁ କେତେ କେତେ ଜାତ ହୋଏ । ୨୨ ।
ଜଲ ଥଲ ଅନଲ ପବନ ଶୂନ୍ୟ,
ବ୍ରହ୍ମା ଶଙ୍କର ଉମା ସୁରୁଜ ସୋମ । ୨୩ ।
ଯମ କୁବେର ଇନ୍ଦ୍ର ବରୁଣ ଆଦି,
କହି ଲୋଡ଼ିଲେ ବଶା ହୋଇବ ବଧି । ୨୪ ।
ଏତେ ପ୍ରଭୁର କେହୁ ଜାଣିମ ହୃସ୍ୱା,
କୋଟି ବ୍ରହ୍ମାଣ୍ଡେ ଘୋଟିଛି ଯାର ମାୟା । ୨୫ ।
ଆମ୍ଭେ କେବଳ ତୁମ୍ଭ ଚରଣେ ଦାସୀ
ସେବା ନ ଜାଣୁ ଆଗ୍ରେ କରିଛୁ ଆସି । ୨୬ ।
ଜ୍ଞାନେ ଅଜ୍ଞାନେ ଯେତେ କରିଛୁ ଦୋଷ,
କ୍ଷମା କରିବା ପ୍ରଭୁ ଶରଣ ଦାସ । ୨୭ ।
ଯାହା ଆଜ୍ଞା ହୋଇଅଛୁ କହିବାକୁ,
ତାହା ସମସ୍ତେ ଆସିଛୁ ଶୁଣିବାକୁ । ୨୮ ।
ମହାପ୍ରଭୁଙ୍କର ଭଲ ଯେଉଁ କଥା,
ତାହା ଶୁଣି ଗୁଡ଼ିବ ସବୁରି ବ୍ୟଥା । ୨୯ ।
ତୁମ୍ଭ ଚନ୍ତାରେ ଆମ୍ଭେ ସକଳେ ଦୁଃଖୀ,
ପ୍ରଭୁ ପ୍ରସନ୍ନେ ଆମ୍ଭଙ୍କୁ କର ସୁଖୀ । ୩୦ ।

ଶୁଣି ସନ୍ତୋଷ ହୋଇଣ ପୀତବାସ,
କର ପ୍ରସାର ବୋଇଲେ, ଆସ ଆସ । ୩୧ ।

ପ୍ରଭୁ ହରଷମୁଖ ସୁନ୍ଦର ଦେଖି,
ଅଷ୍ଟ ପାରୁଶ୍ୱେ ବସିଲେ ଅଷ୍ଟ ସଖୀ । ୩୨ ।

ଯେତେ ଯୁବତୀପଟଳ ପିଁଟୁଆଣ,
ସବୁ ରହିଲେ ପ୍ରଭୁ ଚାରୁଣେ ପୂର । ୩୩ ।

ଅପସରକୁ ଆହ୍ଲା ଦେବରାଜେ,
ରତ୍ନପଲଙ୍କେ କରଅଛନ୍ତି ବଜେ । ୩୪ ।

ସବୁ ଠାକୁରାଣୀଙ୍କର ସ୍ତବ ଯାହା,
ଦେବଦୂତି ଭ-ଦାସ ପାଇଲୁ ତାହା । ୩୫ ।

(ଗାହା) ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଥ ଛାନ୍ଦେ,
ଦିବ୍ୟାଙ୍ଗନାବୃନ୍ଦ ସ୍ତବରାଜ ବନ୍ଦେ,

ପଞ୍ଚମ ଛାନ୍ଦ ବର୍ଣ୍ଣିନେ କେବଣ ମହିମା,
କହିବାକୁ ଆଜ୍ଞା ହେବ ଶ୍ରୀପୁରୁଷୋତ୍ତମା । ୪ ।

---

## ପଞ୍ଚମ ଛାନ୍ଦ ।

*0*

ରାଗ—ଚକ୍ରକେଳି ।

ଏଥୁ ଅନ୍ତରେ ଶୁଣିମା ସୁଜନ,
ରସ ରହସ୍ୟ-ମଞ୍ଜରୀ ବିଧାନ । ୧ ।
ପ୍ରଭୁ ପ୍ରିୟାନ୍ତ ପାରୁଶେ ବସାଇ,
ତାଙ୍କୁ ସାତୁକ୍ୟାସବରେ ମିଶାଇ । ୨ ।

ତୁମ୍ଭେ ଶୁଣ ରୁକ୍ମିଣୀ ଗୁଣବନ୍ତୀ,
ମିତ୍ରବିନ୍ଦା ସୁନନ୍ଦା ଶଙ୍ଖାବତୀ । ୩ ।

ଲକ୍ଷ୍ମଣା ସୁଶୀଳା ସିନ୍ଧୁସୁତା,
ଜାମ୍ବବତୀ ସତ୍ୟଭାମା ଯେତେ କାନ୍ତା । ୪ ।

ସାତ ପାଞ୍ଚ ଉପରେ ଅଧିକାରୀ,
ତୁମ୍ଭେ ଷୋଡ଼ଶ ସହସ୍ରଙ୍କ ସନ୍ତତି । ୫ ।

ଯାହା ପରମ ରସ କଥା ଦୁର୍ଲଭ,
ଶିବ ଉମା ଶୁଣିବାକୁ ସୁଲଭ । ୬ ।

ଦ୍ରବ୍ୟ ଶୁଦ୍ଧ ସାରୂପ୍ୟ ବୁଦ୍ଧି ସାର,
ଏହା ଶୁଣି ତ ଶରଧା ମୋହର । ୭ ।

ତୁମ୍ଭେ ରାଜାଙ୍କ କେମା ରଜଗୁଣ,
ତୁମ୍ଭ ସଙ୍ଗେ କେ ଅଛୁ ବଡ଼ ପଣ । ୮ ।

ରାଧା ସାରୂପ୍ୟା, ରାଜପୁରୀ ରୁକ୍ମିଣୀ,
ଯାହା କହୁଛୁ ବେଦ ଅଥର୍ବଣୀ । ୯ ।

ଏହା ଶୁଣି ସିଂହ ହୋଏ ଶୃଗାଳ,
ଶୃଗାଳହିଁ ହୋଏ ସିଂହ ପ୍ରବଳ । ୧୦ ।

ସିଂହ ଶୃଗାଳ ପଥର ମହିମା,
ପ୍ରେମ-ଭକ୍ତସ୍ୱାମାନେ ତା ଜାଣିମା । ୧୧ ।

ତୁମ୍ଭ ରଜଗୁଣ ଯେବେ ଦେଖିବ,
ଶୁଦ୍ଧ ସାରୂପ୍ୟ ସ୍ୱବରେ ଭଜିବ । ୧୨ ।

ତେବେ ଲଭିବ ସୁଧାମସ୍ତେ ରସ,
ହଂସା ବହିଲେ ସବ ସିବ ନାଶ । ୧୩ ।

ତୁମ୍ଭେ ନ ବୁଝି ବୋଲ ନିଜ କଥା,
ଆମ୍ଭେ ମନରେ ପାଉଥାଉ ବ୍ୟଥା । ୧୪ ।

ଯେବେ ଶୁଦ୍ଧ ଚଇତନେ ଶୁଣିମ,
ହେଜ ବୁଦ୍ଧି କଥା ମନେ ଗୁଣିମ । ୧୫ ।

ତେବେ କହିବା ଅନ୍ତର୍ଗତ କଥା,
ଯହିଁ ପାଇଁ ଆତ୍ମ ଏଡ଼େ ଅବସ୍ଥା । ୧୬ ।

ଗୋପୀ ପ୍ରେମ ମାହାତ୍ମ୍ୟ ନାମେ ପାଠ,
ଅଦ୍ଭୁତ ପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ । ୧୭ ।

ପ୍ରେମ-ଭକ୍ତସ୍ୱାମାନଙ୍କର ଆସ୍ଥା,
ଯତ୍ନ କରି ମୁଁ ଥୋଇଅଛୁ ଯଥା । ୧୮ ।

ଗୋପୀ ଗୁଣ ପରମାଣି ଲହିଛୁ,
ଆଜଯାଏ କାହାକୁ ନ କହିଛୁ । ୧୯ ।

କହି ଲେଡ଼ିଲେ କେ ତାହା ବୁଝିବ,
ବଧି ନଦନ୍ଧ ସଗୁଣେ ଯୁଝିବ । ୨୦ ।

ଧ୍ରୁମ୍ଭ ଆକଟ କଥା ଶ୍ରୋତା ଦେଖି,
କହୁଅଛନ୍ତି ଶୁଣ ପ୍ରାଣସଖୀ । ୨୧ ।

ବ୍ରହ୍ମା ରୁଦ୍ର ଯୋଗୀନ୍ଦ୍ର ମୁନି ଯତି,
ନ ଜାଣନ୍ତି ଏମାନେ ମୋର ପ୍ରୀତି । ୨୨ ।

ମନ ଜୀବନ ଆତ୍ମା ପରଗୁଣ,
ଲକ୍ଷ୍ମୀ ସହିତେ ନ ଜାଣନ୍ତି ପୁଣ । ୨୩ ।

ମୋର ବୈକୁଣ୍ଠେ ମନ ନ ରହଇ,
ସ୍ୱର୍ଗ ବସ୍ୱର୍ଗ ଯେତେ ସୃଷ୍ଟି ଭୂଇଁ । ୨୪ ।

ଗୋପୀ ବିହାରସ୍ଥଳୀ ଯେଉଁ ସ୍ଥାନ,
କୋଟି ବୈକୁଣ୍ଠ ନୁହଇ ସମାନ । ୨୫ ।

ସେହି ସ୍ଥାନ ସୁମରି ମୋର ମନ,
ନିରନ୍ତର ହୋଇଥାଇ ଉଛନ୍ନ । ୨୬ ।

ଗୋପୀ ବନ୍ଧୁ ଜୀବନ ଏତେ ସର,
ଫେଡ଼ି କହିଲି ଶୁଣ ସଂନାସ୍ତି । ୨୭ ।
ଯମ, ନିୟମ, ଆସନ, ପ୍ରାଣାମ,
ପ୍ରତ୍ୟାହାର, ଧ୍ୟାନଙ୍କ, ଧାରଣା । ୨୮ ।
ଏହୁ ସମାଧି ଆଦି ଅଷ୍ଟଯୋଗ,
ଶିଦ୍ଧ ଯୋଗୀମାନଙ୍କ ଆତ୍ମାଭୋଗ । ୨୯ ।
ଯୋଗ ସାଧି କୋଟି କଳ୍ପ ଜୀଅନ୍ତି,
ଗୋପୀସ୍ୱଦକୁ ଏ ସରି ନୁହନ୍ତି । ୩୦ ।
ଗୋପୀ ବନ୍ଧୁ କେ ଜାଣେ ମୋର ମନ,
ସେବା ଧର୍ମ ଆଗୁର ଭୁଲ କର୍ମ । ୩୧ ।
ମନ ଗଢ ପଶ ଯା ପଦ୍ମକର୍ମ,
ଗୋପୀମାନଙ୍କ ବନ୍ଧୁ କେ ଜାଣିମ । ୩୨ ।
ଯଜ୍ଞ ଦାନ ତପ କର୍ମ ଆଚର,
ନାନା ତୀର୍ଥ ବ୍ରତ ନିରାହାର । ୩୩ ।
ଏମାନେ ହେ ମୋତେ କାହୁଁ ପାଇବେ,
ଯେତେ ଶ୍ରମ ପାଇ ଆତ୍ମା ଦହିବେ । ୩୪ ।
ବେଦ ଶାସ୍ତ୍ର ପୁରାଣ ଉତ୍ତର,
କେହି ନ ବୁଝଇ ମୋର ଚରିତ୍ର । ୩୫ ।
ଗୋପୀମାନଙ୍କ ଭର୍ତ୍ସନା ବଚନ,
ମୋର ମନ ଜୀବନକୁ ରୋଚନ । ୩୬ ।
ତାଙ୍କ ଗାଳି ଭିତରେ ଯେତେ ଭାବ,
ବ୍ରହ୍ମା ବେଦେ କରିବ କାହୁଁ ଠାବ । ୩୭ ।
ମୋର ମାୟାରେ ମୋହିତ ଜଗତ,
ଗୋପୀମାୟାରେ ମୁହିଁ ସେହି ମତ । ୩୮ ।

ଯେହ୍ନେ ଜଗତ ଜନଙ୍କ ବନ୍ଦିତ,
ମୋର ଅନୁଗ୍ରହ ବାଞ୍ଛା କରନ୍ତ । ୩୯ ।

ଗୋପୀ ପ୍ରେମ ଅନୁଗ୍ରହ ଆକାଂକ୍ଷା,
ସେହମତ ମୋ ନିରନ୍ତରେ ବାଞ୍ଛା । ୪୦ ।

କେତେ କହିବା ବଚନେ ବଖାଣ,
ଜୀବ ଥିବ କି ସେ ଗୁଣ ସୁମର । ୪୧ ।

ମୋର ନାସ୍ତିକେ ସେ କି ଜଇଥିବେ,
ଫେଡ଼ି କାହା ଆଗେ ଦୁଃଖ କହିବେ । ୪୨ ।

କେହ୍ନୁ ରଖିବ ମୋତେ ତାଙ୍କୁ ଦେଇ,
ଏହା ଅର୍ଜିଲି ଏତେ କାଳେ ମୁହିଁ । ୪୩ ।

ମୋତେ ସମ୍ଭାଳନ୍ତା ଥିଲା ଜଣେକ,
ତାହା ପରି କେ ହୋଇବ କ୍ଷଣେକ । ୪୪ ।
ମୋର ବେଦନା ସେ ଅଙ୍ଗେ ଜାଣଇ,
ମୋର ନିମନ୍ତେ ପ୍ରାଣ ମୂରୁଛଇ । ୪୫ ।

ଲୁଚି ଯାଇଁ ତାହାର ହୃତପଣ,
ମୋର ତନୁ ଜୀବନ ଧନ ପ୍ରାଣ । ୪୬ ।
କୋଟି ବ୍ରହ୍ମାଙ୍କୁ ଜିଣି ଯାର ବୁଦ୍ଧି,
କୋଟି ଦୁର୍ଗା ଯାହାକୁ ସେବ ସିଦ୍ଧି । ୪୭ ।

କୋଟି ରମ୍ଭା ଉର୍ବଶୀ ରୂପେ ଗଞ୍ଜି,
ଯାକୁ ସେବନ୍ତ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟେ । ୪୮ ।
କୋଟି ବ୍ରହ୍ମାଣ୍ଡେ ଯେହ୍ନୁ ଅଧିକାରୀ,
ତା'ର ମହିମା କେହ୍ନୁ କହି ପାର । ୪୯ ।

ରାଧା ଠାକୁରାଣୀଙ୍କ ପ୍ରାଣସଖୀ,
ତାଙ୍କ ଲାଗି ସେ ନିରନ୍ତରେ ଦୁଃଖୀ ।୫୦।

ତାଙ୍କୁ କ ପ୍ରକାରେ ଆଣ ଜିଆଇ,
କଉଁ ସଞ୍ଜୀବକରଣୀ ପିଆଇ । ୫୧ ।

କ୍ଷଣେ ନ ଦେଖି ମୋତେ ଯେ ନୟନେ,
ବାଇ ହୋଇ ବୁଲନ୍ତ ବନେ ବନେ । ୫୨ ।

ଏତେଦିନ ସେ କାହିଁଥିବ ଜୀଇ,
ସଖୀ ମରିବ ତାଙ୍କ ଦୁଃଖ ଗୃହିଁ । ୫୩ ।

ସଖୀ ହସ୍ତରେ ଗୋପୀଙ୍କି ମରିବେ,
ଆଉ କାହା ଗୃହିଁ ଦେହ ଧରିବେ । ୫୪ ।

ଯେଉଁକାଳେ ମୁଁ ରାସକ୍ରୀଡ଼ା କଲି,
ହେଲେ ଠାକୁରାଣୀଙ୍କି ନ ଲେଡ଼ିଲି । ୫୫ ।

ଏତେ ମାତ୍ରକେ ଭେଳା ଉପାଇଲି,
ଅଷ୍ଟମାନେ ଜୀବନେ ମରିଥିଲ । ୫୬ ।

ନାନାପ୍ରକାରେ ହୋଇଲ ନବମା,
ନବ ଟଳିଲେ ହୁଅନ୍ତା ଦଶମା । ୫୭ ।

ଦଶ ମାତ୍ରକେ କଥା ସରିଯାନ୍ତା,
ତୁମ୍ଭ ଯାଏ କମ୍ପା କଥା ଥାଆନ୍ତା । ୫୮ ।

ନାନା ଉପାୟମତେ ତାର ସଖୀ,
ତାର ଜୀବନ ମାତ୍ର ଥିଲ ରଖି । ୫୯ ।

ତହୁଁ ଯେମନ୍ତ ହୋଇଛି ବେବସ୍ଥା,
ସେ କ କହିଲେ ସରିବ ଅବସ୍ଥା । ୬୦ ।

କ୍ଷଣେ କ୍ଷଣେ ଯେ ପ୍ରମାଦ କରଇ,
ସେ କ ଏତେ ଦିନେ ଦେହ ଧରଇ । ୬୧ ।

କଉଁ ଦଇବ ମୋତେ ଛନ୍ଦିଗଲ,
କାହ୍ନୁ ଆଣି ରେ କାହିଁ ବନ୍ଦୀ କଲ । ୬୨ ।

*

ଯାଇ ଆସିବ ବୋଲି ମୁଁ ଅଛିଲି,
ଆସି ଗହ୍ୱରରେ ପଡ଼ି ରହିଲି । ୬୩ ।
କଥା ବାଣ୍ଟିଲେ ନ ଆସଇ କିଛୁ,
ବୁଦ୍ଧି ହରାଇ ଏବେ ଭାଳୁଅଛୁ । ୬୪ ।
ଏତେ କହି କପାଳେ କର ମାରି,
ମୂର୍ଚ୍ଛା ଯାଇଁ ପଡ଼ିଲେ ବସୁନ୍ଧରୀ । ୬୫ ।
ଧାଇଁ ଧଇଲେ ଅଷ୍ଟପାଟବଂଶୀ,
କୋଧେ ଗଦଗଦ ହୋଇ ସୁକେଶୀ । ୬୬ ।
ସିଞ୍ଚି ବିଞ୍ଚଣ ସଚେତ କରନ୍ତି,
ନନା ପ୍ରକାରେଣ ମୋହ କରନ୍ତି । ୬୭ ।
ଗନ୍ଧ ଚନ୍ଦନ କର୍ପୂର କସ୍ତୂରୀ,
ପ୍ରଭୁ ଶ୍ରୀଅଙ୍ଗେ ବୋଳନ୍ତି ଚତୁରୀ । ୬୮ ।
କେଶ ବାସ ସୁବେଶ କରି ବାଳୀ,
ବେଢ଼ି ଗୃମର ଆଳଟନ୍ତି ଢାଳି । ୬୯ ।
ଦିବ୍ୟ ଆସନେ ବିଜେ କରାଇଲେ,
ପାଟ ଅପସ୍ରରେ ଆଜ୍ଞା ଦେଲେ । ୭୦ ।
ତାଳ ମୃଦଙ୍ଗ ରବା ବୀଣା ବଂଶୀ
ନୃତ୍ୟ ଗୀତ ଆରମ୍ଭିଲେ ସୁକେଶୀ । ୭୧ ।
ପ୍ରଭୁ ଚମକି ଉଠେ ପୁଣ ପୁଣି,
ରାଧା ରାଧା ଉଚ୍ଚାରି ମୁଖେ ବାଣୀ । ୭୨ ।
ପଡ଼ି ଦୁଇରେ ସଳଖି ବସିଲେ,
ରୁକ୍ମିଣୀଙ୍କ ମୁଖ ଗୃହିଁ ହସିଲେ । ୭୩ ।
ଯାଏ ପଡ଼ିଣ ହୋଇ ଶୁଭ୍ରକେଶୀ,
ମୁଖେ ତାମ୍ବୂଳ ଯୋଗାଇଲେ ଆସି । ୭୪ ।

ଅଷ୍ଟ-ପାଟବଂଶୀ-ପଟ୍ଟ-ଚରଣେ,
ଦେବ ଖଞ୍ଜଣ ଗଲ ଅନୁକ୍ଷଣେ । ୨୫ ।
(ଗାହା) ଇତ ଶ୍ରୀ ରହସ୍ୟମଞ୍ଜରୀ ପଞ୍ଚମଛାନ୍ଦେ,
ଅନ୍ତର୍ଯାମୀ-ଅନ୍ତଃକରଣ-ଜ୍ଞାତ ବନ୍ଦେ ।
ଷଷ୍ଠମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଗଂ୍ୟାନ,
କହିବାକୁ ଆଜ୍ଞାହେଉ ଦେବକୀ ଦେବୀର ନାନ । ୫ ।

—)ː೦ː(—

# ଷଷ୍ଠ ଛାନ୍ଦ ।

—ː೦ː—

ମଙ୍ଗଳ ଗୁର୍ଜ୍ଜରୀ ଗଟଗଣ ଗୀସ୍ୟତେ ।
(ଭ୍ରମ ବଶ ପ୍ରଥମଛାନ୍ଦରେ ଗାଇବ)
ପ୍ରଭୁଙ୍କ ଏସନ ଘାତ ପ୍ରିୟାଗଣ ଦେଖି,
ପ୍ରସ୍ତୀଭୂତ ହୋଇଣ ରହିଲେ ସବସଖୀ ଯେ । ୧ ।
ଲେକେ ଲେଚ ଲେଚ ହୋଇ ରହିଲେ ତରୁଣୀ,
କାହାର ମୁଖରୁ ଫୁଟି ନ ଆସଇ ବାଣୀ ଯେ । ୨ ।
ରବା ବୀଣା ବଂଶୀ ତାଳ ମୃଦଙ୍ଗ ପକାଇ,
ଚଳାଣ ପଡ଼ିଲେ ମୁଣ୍ଡେ ମୁଣ୍ଡ ମାର ହୋଇ ଯେ । ୩ ।
ଆଇ ଆଇ ଗଦଗଦ ହୋଇଣ ସୁନ୍ଦରୀ,
କାନ୍ଦଣ ଉଠିଲେ ଶୋକ ସମ୍ଭାଳ ନ ପାର ଯେ । ୪ ।
କେହୁ ମାନଭରେଣ ବସିଲ ମଥା ପୋଡ
ପ୍ରମ୍ଭର ଉହାଡ଼େ କାନ୍ଦେ କେବଣ ଯୁବତୀ ଯେ । ୫ ।
ସଖୀଙ୍କର ବୋଧ ଦେଖି ଖ୍ୟମ୍ଭକଦୁଲାଳୀ,
କର ଯେନ ପଛକୁ ଠାଣଲେ ରହ ବୋଲି ଯେ । ୬ ।
ପ୍ରଭୁଙ୍କ ଛାମୁରେ ରହ ଶ୍ରୀମତୀ ରୁକ୍ମିଣୀ,
କରପଦ୍ମ ଯୋଡ଼ି ଦେବୀ ପବ୍ଭଶନ୍ତ ବାଣୀ ଯେ । ୭ ।

ଅଶେଷ ଈଶ୍ବର ତୁମ୍ଭେ ଶୁଣ ଦେବରାଏ,
ପଚ୍ଚାରି ଲୋଡ଼ଇ ନାଥ ଏକଇ କଥାଏ ଯେ ୮ ।
କୋପ ନ କରିବ ଯେବେ ପ୍ରଭୁ ଜଗନ୍ନାଥ,
ଯାହା ପଚ୍ଚାରିବି ତାହା କହିବ ନିଶ୍ଚିତ ଯେ । ୯ ।
ପ୍ରଭୁ ବୋଲୁଛନ୍ତି ତୁମ୍ଭେ ଶୁଣ ପ୍ରାଣପ୍ରିୟା,
କ୍ୟାଁସକୁ କି ଦୋଷ ଅଛୁ କପାଁ ବୋଲ ଏହା ଗୋ । ୧୦ ।
ଯାହା ପଚ୍ଚାରିବ ସଖି କହିବଇଁ ସତ,
ତୁମ୍ଭ ମୁଖ ବୃହି କରୁଛୁ ସୁକୃତ ଗୋ । ୧୧ ।
ବୋଲନ୍ତି ରୁକ୍ମିଣୀ ତୁମ୍ଭେ କହୁଥିଲ ଯାହା,
ଲୋହଟାଇ ଶ୍ରୀମୁଖରେ ମୁଁ ପଚ୍ଚାରିବି ତାହା ହେ । ୧୨ ।
ବ୍ରହ୍ମା ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ନାଗ ବିଦ୍ୟାଧର,
ଯମ ନଇଋତ ଇନ୍ଦ୍ର ଅନଳ କୁବେର ହେ । ୧୩ ।
ବରୁଣ ପବନ ଆଦି ସିଦ୍ଧ ସୁପର୍ବାଣ,
ଏହି ନ ଜାଣିଲେ ତୁମ୍ଭ ଆତ୍ମା ପରିଗୁଣ ହେ । ୧୪ ।
ଧାର୍ମିକ ବିବେକ ଯୋଗୀ ସିଦ୍ଧ ଦାନୀ ଧ୍ୟାନୀ,
ବ୍ରହ୍ମଚାରୀ ବେଦାନ୍ତୀ ମହନ୍ତ ମୁନି ଜ୍ଞାନୀ ହେ । ୧୫ ।
ଏମାନେ ହେ ନ ଜାଣନ୍ତି ତୁମ୍ଭର ମରମ
ସର୍ବକାଳେ ସେବା କରି ଯେତେକ ଶ୍ରମ ଧର୍ମ ହେ । ୧୬ ।
ଏକମାତ୍ର ଗୋପିକା ଜାଣିଲେ ତୁମ୍ଭ ଗୁଣ,
ତାହାଙ୍କର ଗାଳି ତୁମ୍ଭେ ସ୍ତୁତି ପ୍ରାୟେ ମଣ ହେ । ୧୭ ।
ଏକା କରି ଗୋପିକା ତୁମ୍ଭଙ୍କୁ କୋଠ କଲେ,
ଆମ୍ଭମାନେ ଭଜି ତୁମ୍ଭ ଲେଶ ନ ପାଇଲେ । ୧୮ ।
ସର୍ବ ସୁଖ ତେଜି ସେବା କରନ୍ତି ତୁମ୍ଭଙ୍କୁ,
କୋଟିଏ କଳ୍ପରେ କୃପା ନ କର ତାହାଙ୍କୁ ହେ । ୧୯ ।

ଏମାନଙ୍କ କୃପା ଶତ ହୋଇବ ଗୋସାଇଁ,
ଶ୍ରୁତିପଥେ ସେବା ତ ସୁଫଳ ଲେଖି ନାହିଁ ହେ । ୨୦ ।

ବୋଲନ୍ତି ମାଧବ ଶୁଣ ଯୁବତୀରଞ୍ଜନ,
ଯେ ଯେଉଁ ବାଞ୍ଛାରେ ମୋତେ କରନ୍ତି ଅର୍ଚ୍ଚନ ଗୋ । ୨୧ ।

ସେ ଫଳ ପ୍ରାପତ ତାଙ୍କୁ ଶୁଣସି ମୃଗାକ୍ଷି,
ଏଥି ମଧ୍ୟେ ସନ୍ଧିମର୍ମ ଭିନ୍ନେ ଭିନ୍ନେ ଅଛି ଗୋ । ୨୨ ।

ଏମନ୍ତ ସେବାକୁ କୋଟି ମୁକ୍ତି ଦେଇ ପାରି,
ବିନା ଗୋପୀଭାବେ ଭକ୍ତି ଦେଇ ତ ନ ପାରି ଗୋ । ୨୩ ।

ସ୍ୱରଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ କୋଠ-ଗୋପୀମାନଙ୍କର ଗୋ । ୨୪ ।

ଗୋପୀଙ୍କି ଭଜିଲେ ଭକ୍ତ ପ୍ରେମଭକ୍ତି ପାଇ,
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ । ୨୫ ।

ପ୍ରେମଭକ୍ତି ପ୍ରାପତ ଗୋପୀଙ୍କ ପରସନ୍ନେ,
ପୁଂଲିଙ୍ଗ ପାଲଟି ସ୍ତ୍ରୀ ହୁଅଇ ତତକ୍ଷଣ ଗୋ । ୨୬ ।

ଅଙ୍ଗସିଦ୍ଧ ହୋଇଲେ ମୋ ପାରୁଶରେ ରହି,
କୋଟି କଳ୍ପ ଗଲେ ହେଁ ପଲକେ ତାକୁ ନୋହି ଗୋ । ୨୭ ।

ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ,
ମୁଣ୍ଡର ଉପରେ କେହୁ ମୁଣ୍ଡେକ ବନ୍ଧିବ ଗୋ । ୨୮ ।

ସ୍ତ୍ରୀ ବୃନ୍ଦ ମଧ୍ୟରେ ପୁରୁଷବର ମୁହିଁ,
ସେ ପୁରେ ପଶିବ କେ ପୁରୁଷଲିଙ୍ଗ ବହି ଗୋ । ୨୯ ।
ମୋହ ବିନୁ ନାହିଁ ତହିଁ ଦୋସର ପୁରୁଷ,
ସ୍ତ୍ରୀବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ । ୩୦ ।
ପ୍ରେମ-ପୂର୍ଣ୍ଣ-ଭକ୍ତିସ୍ଥା ଲଭନ୍ତି ସେହି ସ୍ଥାନ,
ଆଉ ଭକ୍ତି ଦାସ୍ୟ ସଖ୍ୟ ବାତ୍ସଲ୍ୟ ଏ ଜାଣ ଗୋ । ୩୧ ।

ଏମାନେ ଲଭନ୍ତି ମୋର ବିଭୂତି ବିଭବ,
ଷୋଡ଼ଶ ବିଭୂତି ମଧ୍ୟେ ଯାର ଯହିଁ ଠାବ । ୩୨ ।
ଏଥିର ମୂଳବିଭୂତି ଅଛି ଯେଉଁ ସ୍ଥାନେ,
ସେ ମହାବିଭୂତି କାହିଁ ଲଭିବେ ଏମାନେ ଗୋ । ୩୩ ।
ସେ ମୂଳବିଭୂତି ସ୍ୱାନୁଭୂତି ମହାଭୂତ,
ଗୋପିକା ପ୍ରସନ୍ନେ ଭକ୍ତ ସେ ଧନ ଲଭନ୍ତି ଗୋ । ୩୪ ।
ସେ ମହାରାସମଣ୍ଡଳୀ ନିତ୍ୟ ବୃନ୍ଦାବନେ,
ତହିଁ ମୁଁ ବଞ୍ଚଇ ରାଧା ଅଙ୍ଗ ଆଲିଙ୍ଗନେ ଗୋ । ୩୫ ।
ତାଙ୍କ ରସଜଳେ ବୁଡ଼ି ନ ଜାଣଇ କିଛି,
କୋଟି କୋଟି କଳ୍ପ କେଣେ ବହି ଯାଉଅଛି ଗୋ । ୩୬ ।
ବେନି ଜନେ ବିସ୍ମରି ଅଇଲୁ ମର୍ତ୍ତ୍ୟପୁରେ,
ଜନମ ଲଭିଲୁ ନନ୍ଦ ବୃଷଭାନୁ ଘରେ ଗୋ । ୩୭ ।
ଗୋପୀମାନେ ଆଗ ଆସି ବାଟ ଚାହିଁ ଥିଲେ,
ଆମ୍ଭର ପ୍ରବେଶ ମାତ୍ରେ ଆସି ଆବୋରିଲେ ଗୋ । ୩୮ ।
ତାଙ୍କୁ ଘେନି ଗୋପପୁରେ ନାନା କ୍ରୀଡ଼ା କଲୁ,
ନିତ୍ୟସ୍ଥଳ ରାସ ନୃତ୍ୟ ବନେ ଭିଆଇଲୁ ଗୋ । ୩୯ ।
କେଉଁ ଯୋଗେ ଦଇବ ବିଚ୍ଛେଦ କଲା ଆଣି,
କ୍ଷଣକହିଁ କୋଟିଯୁଗ ତାଙ୍କ ବିନୁ ମଣି ଗୋ । ୪୦ ।
ପଶ୍ଚିର ଆଣିଲ ସଖି ଯେତେ ଯେତେ କଥା,
ଥୋକାଏ କହିଲୁ ଆଦ୍ୟ ପୁରାଣ ବାରତା ଗୋ । ୪୧ ।
ଅଳପ ସୃଜିଲୁ ଅଥବା ଶ୍ରୁତିସାର,
କହିଲଇଁ ଗୁହ୍ୟତତ୍ତ୍ୱ ନ କର ଅନ୍ତର ଗୋ । ୪୨ ।
ନ ଜାଣି ମନରେ କ୍ରୋଧ କର ପ୍ରାଣପ୍ରିୟା,
ବୁଝିଲ କି ଏବେହେଁ କହିଲୁଁ ଆମ୍ଭେ ଯାହା ଗୋ । ୪୩ ।

ପ୍ରଭୁଙ୍କ ଶ୍ରୀମୁଖଁ ଶୁଣି ପ୍ରବୋଧନା କଥା,
ବାହୁ ଯେ ଯାଷ୍ଟମ ଅନ୍ତର୍ଗତେ ଅଛ ବଥା ଯେ । ୪୪ ।
ଧଣ ବସି ପୁଛନ୍ତି ସକଳ କୁଳାଙ୍ଗନା,
ଦେବ ବୋଲେ ରଖ ମୋତେ ପ୍ରଭୁ ବନ୍ଦ୍ରସେନ୍ଧା ହେ । ୪୫ ।
ଇତ ଶ୍ରୀ ରହସ୍ୟମଞ୍ଜରୀ ଷଷ୍ଠ ଛାନ୍ଦେ,
ଗୋପିକା ପ୍ରେମଲକ୍ଷଣ ଭକ୍ତ ବନ୍ଦେ,
ସପ୍ତମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ସୁଖ,
କହିବାକୁ ଆଜ୍ଞା ହେଉ ବଂଶୀଧର ମୁଖ ।



## ସପ୍ତମ ଛାନ୍ଦ ।

—ଃ()ଃ—

ରାଗ—ବ୍ରେଖି—ସପନ ଚେତସ୍ଥା ବାଣୀରେ ।

ନକର ନୃପନନ୍ଦନୀ ତ୍ରିଜଗଜନବନ୍ଦନୀ
ମାନ ଅଗ୍ନି ଦହୁଅଛୁ ସବୁର ଅଙ୍ଗ,
କ୍ଷଣେ କ୍ଷଣେ ହୃଦବୋଧ କ୍ଷଣେ କ୍ଷଣେ ବଢେ କୋଧ
କ୍ଷଣେ କ୍ଷଣେ ଅନୁଆନ ହୃଦେ ପ୍ରସଙ୍ଗ,
କନାକନ ହୋଇ ଯୁବତୀ,
ଏକକୁ ଆରେକ କଥାସନ୍ଧ ପୁଛନ୍ତି । ୧ ।

---

୪୫—କୁଳଙ୍ଗନା (ସମସ୍ତ ପୋଥିରେ)-ଓଡ଼ିଆରେ ଏହାର ବ୍ୟବହାର ଅଶୁଦ୍ଧ ମନେ କରୁନାହୁଁ, ଯଷ୍ଠୀତର ପରରୂପ ସନ୍ଧିର ଉଲ୍ଲୁ ଏଠାରେ ପ୍ରଯୁଜ୍ୟ ।

୧—୫:—କୁନାକୁନ (ଗ), କାହା କର୍ଣ୍ଣେ କେହୁ ଯୁବତୀ (ଖ), କନାକନ, ଚୁନାକୁନ, କର୍ଣ୍ଣାକର୍ଣ୍ଣି (କାନେ କାନେ କହିବା) ଏକ ଅର୍ଥ ।

ଦଦନ୍ତ ଜମ୍ବେବଜେମା ଶୁଣ ତୁମ୍ଭେ ମର୍ତ୍ତ୍ୟସ୍ୱମା
ବଡ଼ ଠାକୁରାଣୀଙ୍କର ଶ୍ରୀମୁଖରେ ସୂଚ,
ପ୍ରଭୁଙ୍କ କଥାରେ ସନ୍ଧ ଏ ସୃଷ୍ଟିରେ ବଡ଼ ନାହିଁ,
ଏକା ତାଙ୍କ ଗୋପୀମାନେ ସବୁହିଁ ଉଚ୍ଚ,
ମେଘଯାଏ କବଣ୍ଟ ଷାର,
ଏହାଙ୍କ ମନର ମୋହ ବନ୍ଦୀମନ୍ଦର । ୨ ।
କୁଚ ଉଚ୍ଚ ଗିରିବର ବର୍ତ୍ତୁଳ ଘଞ୍ଚ ରୁଚିର
ମନ୍ଦରଧର ବସ୍ତାର କରନ୍ତୁ ଲଗି,
ଅନ୍ତର ଫରୁଆ ଉର ସେ କାହୁଁ ଲଗିବ କର,
ତେଣୁକରି ଋଷି ଆମ୍ଭେ ତାଙ୍କୁ ଅଲଗି,
ଏବେ ତାଙ୍କ ଶ୍ରୀମୁଖରେ ପୁଚ୍ଛ,
ଗୋପକନ୍ୟାମାନେ ଯେବେ ତାଙ୍କ ସାରନ୍ଥ । ୩ ।
ସେ ଯେବେ ନିତ୍ୟ ବିଳାସୀ ତାଙ୍କ ଆଜ୍ଞା ପାଇଁ ଆସି
ଜନମ ଲଭିଲେ ଗୋପ ନଗରେ ଯାଇଁ,
ତେବେ କହ୍ନା ବ୍ରଜକାନ୍ତା ନକୁଚ୍ଛ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ,
ଆଜ୍ଞା ଦେଲେ ଶ୍ରୀମୁଖେ ଯାହା,
ରାଧା ଠାକୁରାଣୀ ତାଙ୍କ ଅର୍ଦ୍ଧାଙ୍ଗ ପ୍ରିୟା । ୪ ।
ଚନ୍ଦ୍ରସେଣା ନାମେ ମୂର୍ଖ ଅଛୁ ଏକ ଗଉଡ଼େକ
ଯେହୁ ପର ସେ କନ୍ୟାକୁ ବଶ ହୋଇଛୁ,
ଦେଖିବାର କଳଯାଉ ଭଣ୍ଡି ଭଲ ଜଣେ କହୁ
ମାତୁଳଙ୍କ ବନିତାକୁ ଭଗ୍ନିକ ଗଛୁ,
ମୁଖ ତାଙ୍କ ଝକ ଦର୍ପଣ,
ଏହାଙ୍କର ମୁଖ ତହିଁ ଦଶେ ଚକ୍‌କଣ । ୫ ।

---

୫—୧;—ଅଛୁ ତହିଁ ଅନ୍ତରେକ (ଛ); ୫—୪, ଭଗ୍ନୀକା (ଛ) ଭଣ୍ଡୋ (କ, ଖ, ଚ); ୫—୬:—ଚିକ୍କଣ (କ) ।

ମୃତ୍ତିକା ମୂଳରେ କାହିଁ ଶୁଙ୍ଘିଲେ ମୁଖ ହସଇ
ପିତଳ ଚନ୍ଦ୍ରକା କାହିଁ ଚୁମ୍ବେ ଚକୋର,
ତେବେଗୋ ପ୍ରାଣେଶ୍ୱ ଆମ୍ଭ ମୁଖ ଶୁଙ୍ଘିଲେ କ ଯିବ ଦୁଃଖ,
ଅଧିକ ହୋଇବ ଦୁଃଖ ଚନ୍ଦ୍ରା ଅଙ୍କୁର,
ଗୋପୀ ତାଙ୍କ ପଦ୍ମିନୀ ବନ,
ସେ ସୂର୍ଯ୍ୟ ନାହାନ୍ତି ଭୃଙ୍ଗ ଯେସନେ ପାନ । ୭ ।
କେବଣ ବେଖର ସଖୀ କେ କେ ମାନେ ଅଛ ଦେଖି
ଏକ ଏକ ଯୁବତୀକ ଦୁଦୁଇ ଭୁଆ,
ନ ଜାଣିଲ ପ୍ରାଣେଶ୍ୱ ହୋଇ କେତେହେଁ ପଣ୍ଟର ତହିଁ
ସୁସ୍ୱାଦ ମଣିଛ ସତୀ ପତିଙ୍କ କଥା,
ଯାହା ମନ ଯହିଁରେ ରତ,
କୋଟି ସ୍ୱର୍ଗଭୋଗ ତାକୁ କଣ୍ଟକ ମତ । ୭ ।
ଯେବଣ ବ୍ୟାଧିକ ଯହିଁ ଔଷଧ ହୋଇଛୁ ପିଇଁ
ସୁସ୍ଥ ହୋଇ ତାକୁ ତାହା ସିବେଗ କଲେ,
ଅପ୍ରିୟ ଔଷଧ ଯେବ ସିବେଗ କର ଅବଧି
ଅଧିକେ ବଢ଼ଇ ବ୍ୟାଧି ଜାଣ ତ ଭଲେ,
ଗୋପୀ ତାଙ୍କ ବ୍ୟାଧି ସୁପଥି,
ଆମ୍ଭେ ତାଙ୍କ ବ୍ୟାଧିକ ନକ୍ଷେଧ କୁପଥି । ୮ ।
ସହକେ ଅଇଲେ ଭଣ୍ଡି ଆସିବୁଁ ବୋଲି ବାହୁଡ଼ି
କଂସ ମାରି ଗୋପକୁ ଲେଉଟି ନ ଗଲେ,
ଦ୍ୱାରକା ବିଜଏ ଜାଣି ଅମ୍ଭ ବିଶ୍ୱମାନ ଶୁଣି
ମନ୍ତ୍ରୀ ମନ୍ତ୍ର ମଉଷଧି ଉପାଏ କଲେ,
ଧନ୍ୟ ରେ ସେ ଗୋପତରୁଣୀ,
ଏତେ ସହ୍ୟ କଲ ତାଙ୍କ ଉଚ୍ଚାଟ-ପାଣି । ୯ ।

---

୭—୭:—ଭୃଙ୍ଗ ଚୁମ୍ବେ ଯେସନ—ଛ ୮—୨:—ପ୍ରିସ୍ୱୋଗ (କ, ଘ, ଚ) ।

*

ଉଷାଙ୍କ ବଚନ ଶୁଣି ହସିଲେ ଶାରଙ୍ଗପାଣି
ଧାଇଁ ପଡ଼ି କମ୍ବୁକଣ୍ଠ-ବାଳୀକି ଧର,
ହୃଦୟେ ଭିଡ଼ନ୍ତେ ଆଣି ଜଡ଼ିଣ ଗଲେ ତରୁଣୀ
ବଦନ ଚୁମ୍ବନ୍ତେ ଯ୍ୟାନ ସହଜେ ହାର,
ଏହ୍ନ ମତ ସବୁନ୍ତ ସୁଖ,
ଯୁବତୀକେ ଭୁଜଯୁଗ ମଣ୍ଡନେ ମୁଖ । ୧୦ ।
ବସ୍ତ୍ରାର ପଦ୍ମ ଆସନ ବସାଇ ଦୀର୍ଘ ଜଘନ
ହୃଦୟ ବସ୍ତ୍ରାର କଲେ ଯେହ୍ନେ ଗଗନ,
ଫିଙ୍ଗି ତାରାଗଣ ଧର ହୃଦୟେ ଗଗନେ ଭର
ନବଢ଼ ପଶରମ୍ଭଣେ ତୋଷିଲେ ମନ,
ମୋହମାନ ହୋଇ ଯୁବତୀ,
ଅନ୍ୟେ ଅନ୍ୟେ ଶ୍ରୀହରି ବଦନ ଚୁମ୍ବନ୍ତି । ୧୧ ।
ବସରଲେ ସୁବଂଶ୍ୟାନେ ଅଧର ଅମୃତ ପାନେ
ନୟନେ ନୟନ ଜଡ଼ି ବୁଡ଼ି ରହିଲେ,
ଶ୍ରୀହରି ଶ୍ରୀମୁଖ ସୁଖ ସ୍ମରଣେ ହରଲେ ଦୁଃଖ
ମାନ ତେଜି ବଚନ ସରସେ କହିଲେ,
ହର ପଶରମ୍ଭଣ ପ୍ରୀତ,
ଦେବ ଶନ୍ତେ ପ୍ରିୟାଗଣ ରମଣ ମୂର୍ତ୍ତି । ୧୨ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ସପ୍ତମ ଛାନ୍ଦେ,
ଦ୍ୱାରକା ଯୁବତୀ ପଣ ଉଷାଙ୍କ ବନ୍ଦେ
ଅଷ୍ଟମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ସମ୍ବାଦ,
କହିବାକୁ ଆଜ୍ଞା ହେଉ କମଳା ବିଳାସ । ୭ ।

---

୧୦—୧:—ହଂସାଳୁ (ଗ, ଘ) ନାଗରମଣି-(ଛ) । ୧୦—୫:—ସବୁର (ଘ, ଗ), ସ କ୍ଷୁ (କ, ଖ) । ୧୨ ୧:—ବସ୍ୱରଲେ (କ, ଖ), ପାଶୋରଲେ (ଘ) ।

# ଅଷ୍ଟମ ଛାନ୍ଦ ।

*୦*

ଚକ୍ରପଣ୍ଡ ସ୍ୱରେଣ ଗୀୟତେ (ଚକ୍ରପଣ୍ଡ ଚଉପଦୀ ବାଣୀରେ ଗାଇବ)

ବିଦର୍ଭ ଦେଶ ନୃପବରଙ୍କଜମା,
ଦେବୀ ରୁକ୍ମିଣୀ ଗୁଣମଣି ରମା,
ଆଦର ଯେତେକ ରାଜଦୁଲାଳୀ,
ତୁମ୍ଭେ ଶୁଣିଲ 'ଗୋ' ଜାମ୍ବବତୀଙ୍କର ଗାଳି ସ୍ନେ । ୧ ।
ଯେତେ ଗାଳି ଦେଲେ ସବୁ ପ୍ରମାଣ,
ବ୍ରହ୍ମା ବେଦକୁ ଜିଣି କୋଟି ଗୁଣ,
ଏମନ୍ତ ଗାଳି ଯେ ପାରଇ ଦେଇ,
ଆମ୍ଭେ ତାହାଙ୍କୁ 'ଗୋ' ମୁଖ ଚୁମ୍ବି ସୁଖ ପାଉଁ ସ୍ନେ । ୨ ।
ଏମନ୍ତ ଗାଳି ଯାହାଠାରୁ ଶୁଣି,
ଗୋପୀମାନଙ୍କ ପ୍ରାଣେ ତାଙ୍କୁ ମଣି,
ଗୋପୀମାନେହେଁ ତାହାଙ୍କୁ ପ୍ରସନ୍ନ,
କୃପା କରଣ 'ଗୋ' ଯାଚ ଦ୍ୟନ୍ତ ବରଦାନ ସ୍ନେ । ୩ ।
ତାହାଙ୍କ ପ୍ରଭୁ ରାଧାଠାକୁରାଣୀ,
ସେହୁ ପ୍ରସନ୍ନ ହୋନ୍ତି ଭାବ ଜାଣି,
ତାଙ୍କ କୃପାରୁ ସରେ ତାଙ୍କ ଦୁଃଖ,
ଦେବା ତେବେ ସେ "ଗୋ" ଲଭଇ ଆମ୍ଭର ସୁଖ ସ୍ନେ । ୪ ।
କୃଷ୍ଣଯାମଳେ ଏହା କହୁଅଛୁ,
(କୃଷ୍ଣ ପ୍ରାଣେ ମଣି ରାଧା ମୁଗାଛି,
ରାଧା ପ୍ରସାଦୁ ଲଭେ କୃଷ୍ଣଭାବ,
ସେହୁ ତୁମ୍ଭଙ୍କୁ 'ଗୋ' କହିଲୁ ପରମ ଲାଭ ସ୍ନେ) ୫ ।

---

୨—୩:—ଜାଣଇ ଦେଇ (ଗ, ଘ, ଚ)

୫—୨:—ପ୍ରାଣମଣି (କ);୫—୩:—ଲଭଇ କୃଷ୍ଣ ଭାବ (କ, ଗ) ।

ମହନ୍ତ ମୁଖେ ନ ଆସଇ ମିଛ,
ମିଥ୍ୟା ହିଁ ତାଙ୍କର ସତ ପ୍ରତ୍ୟକ୍ଷ,
ଜାମ୍ବବତୀ ଯେତେ କହିଲେ କଥା,
କୋଟି ବ୍ରହ୍ମାଣ୍ଡେ 'ଗୋ' କେ କରି ପାରେ ଅନ୍ୟଥା ସ୍ୱେ । ୬ ।
ଯାହା କହିଲେ ଗୋପ କନ୍ୟା କୁଚ
ମନ୍ଦରଗିରି ପର୍ବତେକ ଉଚ,
କର ବିସ୍ତାର ଗିରିବର ଲାଗି,
ତାହା କହିବା 'ଗୋ' ଶୁଣ ସବ ପଣ୍ଡିତଙ୍କୀ ସ୍ୱେ । ୭ ।
ଯେଉଁକାଳେ ଧୈଲୁ ଗିରିବର,
ଇନ୍ଦ୍ର ବଜ୍ରକୁ ଡରିଲା ମନ୍ଦର,
ତେଣୁ କରି କର ବିସ୍ତାର କଲୁ,
ମୁଠା ଭିତରେ 'ଗୋ' ଗିରି ଲୁଗ୍ଣଇ ରଖିଲୁ ସ୍ୱେ । ୮ ।
ଦ୍ୱାଦଶ ଯୋଜନ ଯେବଣ ଗିରି,
ଏହି ହସ୍ତପଦ୍ମ ମଧ୍ୟ ନ ପୂରି,
ସେ ହସ୍ତ ଗୋପୀଙ୍କ ଉଚ କୁଚରେ,
ଅର୍ଦ୍ଧମାତ୍ରକୁ 'ଗୋ' ନ ଅଣ୍ଟି ଯାଇ ବିସ୍ତାରେ ସ୍ୱେ । ୯ ।
ଗୋପୀଙ୍କ ଯୌବନ ଅଟେ ଯେମନ୍ତ,
ରାଧିକା ଯୌବନ ଏଥୁଁ ଯେମନ୍ତ,
ଗିରିବର ସ୍ଥିର କେତେ ମାତର,
କୋଟି ବ୍ରହ୍ମାଣ୍ଡେ 'ଗୋ' କେ କହୁଁ ତଥି ଗୃତର ସ୍ୱେ । ୧୦ ।
ଶତେ ଯୋଜନ ଉଚ ଯହ୍ମବନ,
ବିସ୍ତାର ହିଁ ଗୋ ଶତେ ଶତେ ଯୋଜନ,
ମର୍କତ ଲିଙ୍ଗ ହେମ ଗିରି ସ୍ଥିତ,
ଲିଙ୍ଗ ଉପର୍ଗ 'ଗୋ' ବିଂଶ କୋଶ ବିଂଶ ପ୍ରତି ସ୍ୱେ । ୧୧ ।
ଏ ଯେ ବୋଇଲେ ସମୂହ ଆବୋର,
ମେଘ ଯାସ୍ତେ ଉଚ ତାଙ୍କ କବରୀ,

ଏହି ପ୍ରକାରେ କର ପ୍ରଚ୍ଛନ୍ନ,
ଦୃଷ୍ଟାନ୍ତରକୁ 'ଗୋ' ନଇଲେ ଆମ୍ଭଙ୍କୁ ବାଛ ହେ । ୧୨ ।
ଶୁଣି ହସିଲେ ସକଳ ତରୁଣୀ,
କଥାରେ କେ ଅବା ପାରିବ ଜିଣି,
ଯାର ଇପ୍ସିତ କହତୁକ କଥା,
ଶ୍ରୁତ ସ୍ମୃତ 'ଗୋ' କହ ତ ନୋହେ ଶକତା ହେ । ୧୩ ।
ବୋଲନ୍ତି ରୁକ୍ମିଣୀ ଶୁଣ ଗୋସାଇଁ,
ଆନ୍ତର କଥା ସନ୍ଧ ଗଲା ରହି,
ରାଧା ଯେବେ ରମ୍ଯ ନିଜ ଯୁବତୀ,
ପ୍ରଭୁ ! କହିବା ହେ ଚନ୍ଦ୍ରସେଣା କମ୍ପା ପତି ହେ । ୧୪ ।
ଗୋପୀମାନେ ହେ ଛନ୍ତି ଭ୍ରାନ୍ତ ଯେନ,
ରମ୍ଯ କାନ୍ତା କମ୍ପା ପରକାମିନୀ,
ଏଥିର ସନ୍ଧ ବୁଝାଇ କହିବା,
ପ୍ରଭୁ ଆମ୍ଭର 'ହେ' ହୃଦୟ ଦୁଃଖ ଦହିବା ହେ । ୧୫ ।
ପ୍ରଭୁ ବୋଲନ୍ତି ଶୁଣିମା ମୁଗାକ୍ଷି,
ଯେସନ ଗୁହ୍ୟ ସନ୍ଧ ତୁମ୍ଭେ ପୁଚ୍ଛି,
ନୃତ୍ୟରେ ଆମ୍ଭେ ଦଶଭୁଜ ବହି,
ବୃନ୍ଦାବନେ ଗୋ ପାଠେଛନ୍ତି ଏହା କହି ହେ । ୧୬ ।
ଶଙ୍ଖ ଚକ୍ର ଗଦା ପଦ୍ମ ଏ ଚାରି,
ଧନୁ ଖଡ଼ଗ ବେନି ଭୁଜେ ଧରି
ଦ୍ୱିଭୁଜେ ବଂଶୀ ଭୁଜେ ଆଲିଙ୍ଗନ,
ଆର ଭୁଜକେ 'ଗୋ' ରାଧା ଚିବୁକ ଚୁମ୍ବନ ହେ । ୧୭ ।
ଏମନ୍ତ ଦଶଭୁଜ ନୃତ୍ୟସ୍ଥଳେ,
ଚୁମ୍ବନ ଲୀଳା ରସ କ୍ରୀଡ଼ା ବେଳେ,

---

୧୨—୧ :—ସମୂହ ଆବେଶ (ଚ) । ୧୪—୨ :—ସନ୍ଧକଥା (ଜ, ଖ) ।

ମଳୟାନିଳ କମ୍ବୁଗର୍ଭେ ପଶି,
ଦେବ ଶୁଣିମା 'ଗୋ' ଅଭ୍ରଭେ ଧ୍ୱନି ପ୍ରକାଶି ସ୍ୱେ । ୮ ।
ରାଧାଙ୍କ ଚିତ୍ତ ଆମ୍ଭ ରସେ ଜଡ଼,
ଆମ୍ଭ ଚିତ୍ତ ହିଁ ଅଛୁ ତହିଁ ବୁଡ଼ି,
ଏମନ୍ତ ବେଳେ କମ୍ବୁରବ ଜାତ,
ଶୁଣି ଚଞ୍ଚଳ 'ଗୋ' ହୋଇଲା ରାଧାଙ୍କ ଚିତ୍ତ ସ୍ୱେ । ୯ ।
ତା ଦେଖି ଆମ୍ଭର ଜନ୍ମିଲା କୋପ,
ବୋଇଲୁ ଏବେ ତୁମ୍ଭେ ଘେନ ଶାପ,
ମୋ ରସ ତେଜିଲ ଯା ରସ ଘେନ,
ମର୍ତ୍ତ୍ୟେ ଜନମି 'ଗୋ' ବୋଲାଅ ତାର କାମିନୀ ସ୍ୱେ । ୧୦ ।
ଶୁଣି ରାଧିକା ମୂର୍ଚ୍ଛାଗତ ହୋଇ,
ବୋଇଲେ ପ୍ରଭୁ କର ତ୍ରାହି ତ୍ରାହି,
ଅଜାଗ ଅପ୍ରାଧକୁ ଏଡ଼େ ଶାସ୍ତି,
ତୁମ୍ଭ ବଚନେ 'ହେ' ଦୋଷର କେ ମୋର ପଥ ସ୍ୱେ । ୧୧ ।
ତୁମ୍ଭ ଆମ୍ଭ ସଙ୍ଗ ସଂଯୋଗ ଜାଣି,
ବ୍ରହ୍ମା କୋଟି ଗଲେ ପଲକେ ମଣି,
ଏବେ ପଲକ ହେବ କଳ୍ପ ସରି,
ପ୍ରଭୁ ଶୁଣିମା 'ହେ' କେସନେ ଜୀବନ ଧରି ସ୍ୱେ ।୧୨ ।
ତୁମ୍ଭଙ୍କୁ ତେଜି ମୁଁ ଯିବି କେମନ୍ତେ,
ତୁମ୍ଭେହେଁ କି ମୁଁ ଛି ପାରିବ ମୋତେ,
କି ବିଗୁଣ କଲି ଏସନ ସାଠ,
'ପ୍ରଭୁ' ଶୁଣିମା 'ହେ' ଏବେ ବୋଲାଇବ କାହା ପଥ । ୧୩ ।
ତାହାଙ୍କର ହୋଧ ଆମ୍ଭଙ୍କୁ ବିରୋଧ,
ବିବିଧ ପ୍ରକାରେ କହିଲୁ ବୋଧ,
ବୋଇଲୁ ଏଥକୁ ନ ବୁଝ ଆନ,
ବୁଧ ବଦନ୍ତି 'ଗୋ' ସହିଁ ରାଧା ତହିଁ କାନ ସ୍ୱେ । ୧୪ ।

ତୁମ୍ଭେ ମୋ ଶ୍ରବଣ ତୁମ୍ଭେ ମୋ ନାସା,
ତୁମ୍ଭେ ମୋହୋର ଜୀବନ ଭରସା,
ତୁମ୍ଭେ ମୋ ମୁଖ ଉଚ୍ଚ ସର୍ବ ଶକ୍ତି,
ତୁମ୍ଭ ବହନେ 'ଗୋ' କରଇ ଆନେ ମୋର ତଥି ସ୍ନେ । ୨୫ ।
ତୁମ୍ଭେ ଗଲେ କ ଆମ୍ଭେ ଥିବୁଁ ରହି,
ଆମ୍ଭେ ଗଲେହେଁ ମର୍ତ୍ତ୍ୟସ୍ଥଳ ନାହିଁ,
ଏ ଥଳ ଅଂଶ ଆଗ ହୋଇ ଯାଉ,
ଗୋପ ଯମୁନା 'ଗୋ' ନାପବନ ହୋଇଥାଉ ସ୍ନେ । ୨୬ ।
ଗୋପୀ ଗୋପାଳ ଅଂଶ ଆଗ ଯାଇ,
ବୃନ୍ଦାବନା ସ୍ଥବେ ଥିବେ ରହି,
ଏ କମ୍ଭୁ ଜାତ ଚନ୍ଦ୍ରସେଣା ନାମ,
ଚନ୍ଦ୍ର କେଶାଭୁଁ 'ଗୋ' ଅଧିକ କଲା ଉପାମ ସ୍ନେ । ୨୭ ।
ସେହୁ ତ ଆମ୍ଭ ଅଂଶ ଅନୁରାଗୀ,
ଆମ୍ଭର ସୁଖ ଭୁଞ୍ଜି ଅଛୁ ଲାଗି,
କେବଳ ତୁମ୍ଭ ଭ୍ରାଥା ହୋଇଥିବ,
ଅଙ୍ଗ ଛୁଇଁ ତ 'ଗୋ' କେବେହେଁ ବୃଦ୍ଧି ନ ଯିବ ସ୍ନେ । ୨୮ ।
ଗୋପୀଙ୍କ ଭ୍ରାଥା ହୋଇବେ ଯେତେକ,
ସେହୁ ତ ଆମ୍ଭ ଅଂଶ ବୋଲି ଲେଖ,
ସମସ୍ତେ ହୋଇବେ ନଷ୍ଟ ପୁରୁଷ,
ତୁମ୍ଭ ଆମ୍ଭର 'ଗୋ' ଚଳଯାଉ ଏବେ ଅଂଶ ସ୍ନେ । ୨୯ ।
ପ୍ରଭୁଙ୍କ ଶ୍ରୀମୁଖୁଁ ଏସନ ବାଣୀ,
ଶୁଣି ସନ୍ତୋଷ କୃଷ୍ଣପାଟରାଣୀ,
ଉଠି ଘଞ୍ଚ ଗଡ଼ଯାଇ ଶୁଅଲେ,
ହୃଦ ହରଷି 'ହେ' ଆନନ୍ଦଜଳ ବହିଲେ ସ୍ନେ । ୩୦ ।
ଉଠି ସମସ୍ତେ ସଲଜ୍ଜିତ ହୋଇ,
ପୁଣି କଣାକୁ ଶିରେ କର ଦେଇ,

ଅବଧାନ ପ୍ରଭୁ ଦେବୀଧର୍ମ୍ମିକଙ୍କୁ,
ଆମ୍ଭ ସବୁର 'ହେ' ମାଗୁଣି ଅଛୁ କଥାଏ ସ୍ୱେ । ୭୧ ।
କେମନ୍ତ ମୂର୍ତ୍ତି ରାଧା ଠାକୁରାଣୀ,
କେମନ୍ତ ସୁନ୍ଦର ଗୋପତରୁଣୀ,
ବାରେକ ଯେବେ ଦର୍ଶନ କରବୁ,
ପ୍ରଭୁ ତେବେ ସେ 'ହେ' ମନର ବାଧା ହରବୁ ସ୍ୱେ । ୭୨ ।
ପ୍ରଭୁ ବୋଲନ୍ତ ଏବେ ତୁମ୍ଭେ ଯାଅ,
ଅଳପ ଦନ ଥିର ହୋଇଥାଅ,
ଉପାଏ ପ୍ରକାରେ ପାରବା ଯେବେ,
ନଶ୍ଚେ ଦର୍ଶନ 'ଗୋ' କରାଇବା ନେଇ ତେବେ ସ୍ୱେ । ୭୩ ।
ଏମନ୍ତେ ମେଲଣି ପାଇ ସୁନ୍ଦରୀ,
ପ୍ରବେଶ ହୋଇଲେ ଯେ ଯାହା ପୁରୀ,
ଯେ ଯାହା ବଧି ବଧାନେ ରହଲେ,
ମନୁ ନ ଯାଇ 'ହେ' ଶ୍ରୀହର ଯାହା କହଲେ ସ୍ୱେ । ୭୪ ।
ଶୁଣ ସାଧଜନ ଅପୂର୍ବ ରସ,
ମନେ ନ ଧରବ କବର୍ତ୍ତ୍ୱ ଦୋଷ,
କବର୍ତ୍ତ୍ୱ ଆସ୍ୱର୍ତ୍ତ୍ୱ ନୋହେ ଏମାନ,
ତେତେବେଳେ ତ ହେ ବୁଡ଼ିଥାଇ ନଜ ଗ୍ୟାନ ସ୍ୱେ । ୭୫ ।
କବର୍ତ୍ତ୍ୱ ଅଂଶ ସରସ୍ୱତୀ ବାଣୀ,
କବର୍ତ୍ତ୍ୱ ଚର୍ତ୍ତ୍ୱ ଅଟେ ଛନ୍ଦ ଗୁଣୀ,
କର ଚଳଲେ ଚଳେ ଗୁଣାବାଣୀ,
କର ନ ହେଲେ 'ହେ' କାହୁଁ ଶବଦ ବଖାଣି ସ୍ୱେ । ୭୬ ।
କବର୍ତ୍ତ୍ୱ ଯେତେ ସରସ୍ୱତୀ ସୁତ,
ଯାହାକୁ ଯାହା ବାଣ୍ଟି ଦ୍ୟନ୍ତ ମାତ,
ଆର୍ଯ୍ୟା ପ୍ରମାଣେ ବାନ୍ଧେ ଗ୍ରନ୍ଥସାର,
ଆର୍ଯ୍ୟା ବନୁ କ ହେ' ମାନବ ଶକ୍ତ ପଙ୍ଗର ସ୍ୱେ । ୭୭ ।

ବସ୍ତୁ ଯାମଲେ ବ୍ରହ୍ମା ନାରଦଙ୍କୁ,
କବିତ୍ୱ ସୁଖ କହିଲେ ତାହାଙ୍କୁ,
ବୋଇଲେ କବି ହୃଦେ ଆନ୍ତ ହର,
କବି ହୃଦରେ 'ହେ' ସରସ୍ୱତୀ ବିଜେ କରି ସ୍ନେ । ୩୮ ।
ଏକ ପଦେ ଏକ ଶ୍ଲୋକକେ ଗୀତ,
କୃଷ୍ଣ ଅର୍ଥେ ଯେବେ କରେ କବିତ୍ୱ
ସର୍ବଦା ତାର ବୃଦ୍ଧି ସିଦ୍ଧି ହୋଇ,
କୃଷ୍ଣ ଅଙ୍ଗେଣ 'ହେ' କାଲେଣ ଆତ୍ମା ଗଛଇ ସ୍ନେ । ୩୯ ।
କବିତ୍ୱ ଗୀତ ସର୍ବ ଲୋକେ ଗାଇ,
କବିତ୍ୱ ଗ୍ରନ୍ଥ ଶୁଣି ସୁଖୀ ହୋଇ,
କବିତ୍ୱ ଗଣ୍ଠି ବାନ୍ଧିଥାଇ ଯାହା,
ମୂର୍ଖ ପଣ୍ଡିତ 'ହେ' ନ ବୁଝି ନିନ୍ଦନ୍ତି ତାହା ସ୍ନେ । ୪୦ ।
ପଣ୍ଡିତ ହୋଇ ମୂର୍ଖ ବୁଦ୍ଧି ଯାର,
ବସ୍ତୁର ନାହିଁ ଜ୍ଞାନ ବୁଦ୍ଧି ତାର,
ଗୁଣ ପକାଇ ଧରି ପାରେ ଦୋଷ,
ରସ ଅମୃତ 'ହେ' ତେଜିଣ ଭକ୍ଷଇ ବିଷ ସ୍ନେ । ୪୧ ।
ତେଣୁ ବୋଲଇ ସନ୍ଥଜନେ ବଡ଼,
ସନ୍ଥର ବିନ୍ଦୁ ଯେତେ ସବୁ ସାଢ଼,
ସନ୍ଥର ପାଦରଜ ମୋର ଶିରେ,
ଦେବ ମାଗଇ 'ହେ' ପଡ଼ିଥିବ ନିରନ୍ତରେ ସ୍ନେ । ୪୨ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଅଷ୍ଟମ ଛାନ୍ଦେ
ଶ୍ରୀରାଧା ପରମ-ଗୁପତ-ତତ୍ତ୍ୱ ବନ୍ଦେ,
ନବମ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ବିନୋଦ,
କହିବାକୁ ଆଜ୍ଞା ହେଉ ଏଥର ଯେ ପରବୋଧ । ୮ ।



*

# ନବମ ଛାନ୍ଦ ।

—:():—

ରାଗ—ବଙ୍ଗଳାଶ୍ରୀ । (ମାଧୋଇବାଣୀରେ ଗାଇବ)

ଏଥୁ ଆନ କଥା   ଗୋପର ବେବସ୍ଥା
ଶୁଣିମା ସୁବୁଦ୍ଧି ଜନ,
କୃଷ୍ଣ ଗଲେ ବନ   ସମସ୍ତେ ନାରୀଗଣ
ଖାନ୍ତି ନ ସରଇ ବନ । ସୁଜନ ହେ । ୧ ।

ରାଧିକା ଦୂତିକା   ସବୁ ସଖୀ ଘେନ
ଭାଳନ୍ତି ଏକାନ୍ତେ ବସି,
କାହାର କି ବୁଦ୍ଧି   ଉପାଏ ପ୍ରସିଦ୍ଧି
ଥିଲେ କହ ମୋତେ ଆସି । ନା ଗୋ ସେ । ୨ ।

ଆମ୍ଭ ପ୍ରତି ଆଶା   ଛାଡ଼ିଲେ ମୁରାରି
ପଡ଼ିଲେ ଚତୁରୀ ଫାନ୍ଦେ,
ଆଉ କାହା ଆଶେ   ପ୍ରାଣ ରଖିଥିବା
ଏହା କହୁ ରାଧା କାନ୍ଦେ । ନା ଗୋ ସେ । ୩ ।

ବୋଲନ୍ତି ଦୂତିକା   ଶୁଣ ଠାକୁରାଣୀ
ବୁଦ୍ଧିଏ ପାଞ୍ଚିବ ମୁହିଁ,
ତେବେ ଯେବେ କାର୍ଯ୍ୟ   ସିଦ୍ଧ ନୋହୁବଟି
ଅଗ୍ନିରେ ପଡ଼ିବା ତେହିଁ । ନା ଗୋ ସେ । ୪ ।

କନ୍ୟାସ୍ୱେ କନ୍ୟାସ୍ୱେ   ଅଙ୍ଗ ଜାତ କର
ପେଷିବା ତାଙ୍କୁ ଦ୍ୱାରକା,
ଉପାୟ କରି ସେ   କଢ଼ାଇ ଆଣିବେ
ମାୟାବୀ ଦଣ ନାଏକା । ନା ଗୋ ସେ । ୫ ।

ଏମନ୍ତ ବୋଲି   କର୍ପୂର ଅଙ୍ଗ ତୋଳି
ଦଳ ଗଢ଼ିଲେ ପିରୁଳା,

ଆଗେ ହସ୍ତ କରି ଶାବନ୍ୟାସ କଲେ
ଚନ୍ଦ୍ର ଆପ ଆସ୍ପକଳା । ନା ଗୋ ସ୍ୱେ । ୬ ।
ପ୍ରଥମେଣ କୃଷ୍ଣ ବୀଜ ଉଚ୍ଚାରଲେ
ସ୍ୱନାମ ଚତୁର୍ଥ ଭରି,
ଛାସ୍ବା ମାସ୍ବା ମେଲି ମନ୍ତ୍ର ଅଷ୍ଟାକ୍ଷର
ପଢ଼ିଲେ ପୁଷ୍ପେକ ଧରି । ନା ଗୋ ସ୍ୱେ । ୭ ।
ବାମ ନାସା ଦ୍ୱାରେ ଜନ୍ମିଣ କୁମାରୀ
ପୁଷ୍ପେ ବକେ କଲ୍ପ ଆସି,
ସେ ପୁଷ୍ପ ପିତୁଳା ହୃଦପଦ୍ମେ ଭରି
ପୂଜା କଲେ ରୂପରାଶି । ନା ଗୋ ସ୍ୱେ । ୮ ।
ରଷି ସ୍ୱନାମ ବଦନ ଲକ୍ଷ୍ମୀ ଦେଇ
କୈରବ ଧରି ରାଧିକା,
ସେହି ପ୍ରକାରେ କନ୍ୟାଏ ଜାତ କଲେ
ସକଳ ଗୁଣେ ଅଧିକା । ନା ଗୋ ସ୍ୱେ । ୯ ।
ଏହି ଅନୁରୂପେ ଆଉ ଅଷ୍ଟସଖୀ
ଜାତ କଲେ ଅଷ୍ଟନାରୀ
ସେ ବଧି ଅଙ୍ଗରେ ପଞ୍ଚ ଉପଚାରେ
ପୂଜିଲେ ମନ୍ତ୍ର-କୁମାରୀ । ନା ଗୋ ସ୍ୱେ । ୧୦ ।
ଗନ୍ଧ ଚନ୍ଦନ କର୍ପୂର ମୃଗମଦ
କୁଙ୍କୁମାଦ ଦେବେ ବନ୍ଧ,
ବିବିଧ ଗନ୍ଧେ ଦଶଦିଗ ଆମୋଦ
ରୂପେ କାମକାନ୍ତା ମୋହ । ନା ଗୋ ସ୍ୱେ ୧୧ ।
ପିଣ୍ଡେ ପ୍ରାଣ ପାଇ ମୂର୍ତ୍ତିବନ୍ତ ହୋଇ
କହେ କରପଦ୍ମ ଯୋଡ଼ି,
ମୁଖ ତୋଳି ଆଜ୍ଞା ହୋଉ ଠାକୁରାଣୀ
କି କାର୍ଯ୍ୟେ ଆମ୍ଭଙ୍କୁ ଲୋଡ଼ି । ନା ଗୋ ସ୍ୱେ । ୧୨ ।

ବୋଲନ୍ତ ରାଧା ଶୁଣ ନନ୍ଦକୁମାରୀ
ଚଳ ଗୋ ତୁମ୍ଭେ ଦ୍ୱାରକା,
ପ୍ରଭୁ ଆଗେ ଆମ୍ଭ ଅବସ୍ଥା କହିବା
ଗାସ୍ୱେଣୀ-ଗଣେ ନାୟିକା । ନା ଗୋ ସ୍ୱେ । ୧୩ ।
ଆଜ୍ଞା ପ୍ରମାଣେ ଚଳଲେ ମାୟାନାରୀ
ବିଚିତ୍ର ବେଶ ବନାଇ,
ଅନ୍ତିଛଗତ ଦ୍ୱାରବତୀ ମିଳଲେ
ପ୍ରଭୁଙ୍କ ସମ୍ମୁଖରେ ଯାଇଁ । ନା ଗୋ ସ୍ୱେ । ୧୪ ।
ଦେଖିଣ ଶ୍ରୀପତି ହଲସିଲ ମନ
ଗାସ୍ୱେଣୀଙ୍କ ରୂପ ଚାହିଁ,
ଏ ତ ମୋତେ ଗୋପୀ ପ୍ରାୟେକ ଦିଶନ୍ତ
କାହୁଁ ଅଇଲେ ଚଳାଇ । ନା ଗୋ ସ୍ୱେ । ୧୫ ।
ରୁକ୍ମଣୀଙ୍କି ଚାହିଁ ଠାରଲେ ଗୋସାଇଁ
ଗାସ୍ୱେଣୀଙ୍କି ଯାଇ ପୁଚ୍ଛ,
ଶୁଣି ରୁକ୍ମଣୀ ହକାର ପଚାରନ୍ତ
(ଆଗୋ) ତୁମ୍ଭେ କାହୁଁ ଆସିଅଛ । ନା ଗୋ ସ୍ୱେ । ୧୬ ।
ନାମ ତୁମ୍ଭ କସ କି କାର୍ଯ୍ୟେ ଆସିଛ
କି କି ଗୁଣ ତୁମ୍ଭେ ବହ,
ଶୁଣି ଗାସ୍ୱେଣୀ ଅଲ୍ପ ହୋଇ ହସନ୍ତେ
ଲଗିଲ ସବୁନ୍ତ ମୋହ । ନା ଗୋ ସ୍ୱେ । ୧୭ ।
ଶୁଣ ପାଟରାଣୀ ମୋ ନାମ ଅଙ୍କିନୀ
ମାତା ମୋ ରାଧା ଗାସ୍ୱେଣୀ,
ଦୂତୀ ଗାସ୍ୱେଣୀ— ଦୁହିତା ସହଚରୀ
ଏ ମୋର ସାନ ଭଗ୍ନେଣୀ । ନା ଗୋ ସ୍ୱେ । ୧୮ ।

---

୧୪—୩:—ଅନ୍ତର୍ଦ୍ଧ୍ୟ (ଗ) ଅନ୍ତିକ୍ଷ (ଖ) ।
୧୮—୪—ସାନ ବହେଣୀ (ଚ), ଭଉଣୀ (ଘ) ।

ଆଉ ସାନ ମା — ଚନ୍ଦ୍ରାବଳୀ ଗାପେୃଣୀ
ହୁଁ ଅ ନାମ ଚନ୍ଦ୍ରମାଳା,
ତା ତଳୁଁ ସାନ — ଗାପେୃଣୀ ଚନ୍ଦ୍ରରେଖା
ନନ୍ଦନୀ ତା ଚନ୍ଦ୍ରଶାଳା । ନା ଗୋ ସ୍ୱେ । ୧୯ ।
ଆଉ ସପତ୍ନୀ — ଚନ୍ଦ୍ରାବଳୀ ନାମ
ହୁଁ ଅ ନାମ ଚନ୍ଦ୍ରବମ୍ବା,
ମଦନା ସୁନ୍ଦରୀ — ଦୁହିତା ମଦନା
ମଦନେ ଉନ୍ମତ୍ତା । ନା ଗୋ ସ୍ୱେ । ୨୦ ।
ଶ୍ରୀପ୍ରିୟା ଗାପେୃଣୀ — ନନ୍ଦନୀ ଏ ଶ୍ରୀମତୀ
ମଧୁମତୀ ହୁଁ ଅ ମେଧା,
ଶଶିରେଖା ତଳୁଁ — ଶଶିପ୍ରଭା ଜାତ
ହରପ୍ରିୟାରୁ ହରଦ୍ରା । ସେ ଗୋ ସ୍ୱେ । ୨୦ ।
ଆମ୍ଭ ପିତାଙ୍କର — ଏ ଦଶ ଉତ୍ତରେ
ଅଛନ୍ତି ବହୁ ବନିତା,
ମୋର ଜନନୀଙ୍କି — ଠାକୁରାଣୀ-ପଣେ
ସେବନ୍ତି ସର୍ବ ସ୍ୱାବତା । ନା ଗୋ ସ୍ୱେ । ୨୨ ।
(ଭୂମ୍ୟେ ଯେମନ୍ତେ — ସର୍ବରାଣୀ ଉପରେ
ଠାକୁରାଣୀ-ପଣେ ଶ୍ରେଷ୍ଠ,
ଆମ୍ଭ ମାତା ସର୍ବ— — ସାବତା ଉପରେ
ମୂର୍ଦ୍ଧନ-ମଣିମୁକୁଟ । ନା ଗୋ ସ୍ୱେ । ୨୩ ।)
ସହଚରୀ ମାତା — ଦୂତକା ଗାପେୃଣୀ
ମୋର ଜନନୀର ସଖୀ,
ଏ ଅଷ୍ଟ କୁମାରୀଙ୍କ — ମାତା ଉପରେ
ଆଉ ଅଷ୍ଟ ଶ୍ରେଷ୍ଠ ଲେଖି । ନା ଗୋ ସ୍ୱେ । ୨୪ ।

---

୧୯—୪ :—ଚନ୍ଦ୍ରକଳା (ଗ) ।
୨୨—୪ :—ସେବନ୍ତି ସେ ସର୍ବମାତା (କ, ଖ, ଗ) ।

ଏ ଦୁଇ ଅଷ୍ଟ ଅଧିଷ୍ଠାୟେ ଗାୟେଣୀ
ଜଣକେ ସହସ୍ରେ ପ୍ରତ,
ଏମନ୍ତେ ଷୋଳ- ସସ୍ର ଅନୁଗାୟେଣୀ
ଷୋଳହସ୍ତ୍ରମୂଳେ ଗାବନ୍ତ । ନା ଗୋ ସ୍ୱେ । ୨୫ ।
ଏହି ପ୍ରକାରେ ଯୂଥ ଯୂଥ ଗାୟେଣୀ
କହିବେ ସରବ ନାହିଁ,
ଏହାଙ୍କ ପ୍ରସନ୍ନେ ସିଦ୍ଧ ସରସ୍ୱତୀ
ବସ୍ତୁଙ୍କୁ ପାଇଲେ ମୋହ । ନା ଗୋ ସ୍ୱେ । ୨୬ ।
ତାଙ୍କୁ ସେବା କରି ସ୍ୱର୍ଗ ବିଦ୍ୟାଧରୀ
ଶିଖିଲେ ଗାନ୍ଧାର ବିଦ୍ୟା,
ନୃତ୍ୟ ଗୀତ ରସେ ଇନ୍ଦ୍ରଙ୍କୁ ମୋହିଲେ
ବଢ଼ାଇଲେ ସ୍ୱର୍ଗେ ଶ୍ରଦ୍ଧା । ନା ଗୋ ସ୍ୱେ । ୨୭ ।
ରୁକ୍ମିଣୀ ବୋଇଲେ ସବୁ କହିଲ ନ
ରଖିଲ ଦୁଇଟି କଥା,
ସ୍ଥାନ ନାମ ପିତା ନାମ ଗୋପ୍ୟ କଲ
ଏ ତୁମ୍ଭ କଉଁ ବେବସ୍ଥା । ନା ଗୋ ସ୍ୱେ । ୨୮ ।
ବୋଲନ୍ତି କୁମାରୀ ଶୁଣ ମହାଦେଇ
ଯାହା ପଚାରିଲ ତୁମ୍ଭେ,
ପିତାଙ୍କ ଛାଡ଼ି ପଳା- ଇଲୁ ବେଳକୁ
ମାତା ଗର୍ଭେ ଥିଲୁ ଆମ୍ଭେ । ନା ଗୋ ସ୍ୱେ । ୨୯ ।
ଆଏ କରି ନାମ ପଚାରି ନ ପାରୁ
ମାୟେ ନ କହନ୍ତି ଯାଚ
ଆନ-ବୃତ୍ତାନ୍ତ ତୁମ୍ଭେ ଯାହା ପୁଚ୍ଛିଲ
ଆମ୍ଭର କ ଥଏ ଅଛୁ । ନା ଗୋ ସ୍ୱେ । ୩୦ ।

---

୨୫—୧ :—ଅଧିଷ୍ଠାତ୍ରୀ [ଘ, ଚ] ।

ଯମୁନା ତଟେ ବୃନ୍ଦାବନ ନିକଟେ
ଗୋପ ବୋଲି ପାଟଣା ସ୍ୱେ,
ସେ ସ୍ଥାନେ ପକାଇ ପିଣ୍ଡା ପଲାଇଲେ
ଦାରୁଣ ଏଡ଼େ ନନ୍ଦ ସ୍ୱେ । ନା ଗୋ ସ୍ୱେ । ୩୧ ।
ମାତାମାନେ ତାଙ୍କୁ ଦୁର ଦୁର ଖୀନ
ନ ପାରନ୍ତି ଗାଇ ବାଇ,
ଧର୍ମ କରି ଗୋପେ ଗୋଆଳେ ପୋଷନ୍ତି
ମନରେ ସୁହୃଦେ ନାହିଁ । ନା ଗୋ ସ୍ୱେ । ୩୨ ।
ତୁମ୍ଭର ଦାନପଣେ ଡାକ ବାଜଇ
ଶୁଣି ପେଷି ଦେଲେ ମାସ୍ୱେ,
ଆମ୍ଭ ନୃତ୍ୟ ଗୀତ ଦେଖି ଦାନ ଦେବ
ଜଣାଅ ରାଜାଙ୍କ ଠାସ୍ୱେ । ନା ଗୋ ସ୍ୱେ । ୩୩ ।
ଶୁଣି ରୁକ୍ମିଣୀ ସବୁ ସଖୀମାନଙ୍କୁ
ଗୃହିଁ ସ୍ତମ୍ଭୀଭୂତ ହୋଇ,
ପ୍ରଭୁ ବୋଇଲେ ଲୋ କି କି ନୃତ୍ୟ ଗୀତ—
ବିଦ୍ୟାରେ କୁଶଳ ତୁହ୍ମ । ନା ଗୋ ସ୍ୱେ । ୩୪ ।
ଗାସ୍ୱେଣୀ ବୋଇଲେ ଶୁଣ ମହାରାଜା
ସବୁ ନୃତ୍ୟ ଆମ୍ଭେ ଜାଣୁ,
କନାଇ ରାଧିକା ନୃତ୍ୟ ଗୀତ ବିନୁ
ଆବର ନାଚ ନ ମଣୁ । ରାଜନ ହେ । ୩୫ ।
ସେତେ ବୋଲି ପଦ୍ମ- ପ୍ରବନ୍ଧେ କୁମାରୀ
ରଚିଲେ ବିବିଧ ବେଶ,
ଅର୍ଦ୍ଧିନୀ କି ରାଧା ରୂପେ ସଜ କରି
ଆରମ୍ଭିଲେ ନୃତ୍ୟ ରସ । ନା ଗୋ ସ୍ୱେ । ୩୬ ।

---

୩୧—୩ ?—ଗୁଡ଼ଣ ପିଣ୍ଡା (କ, ଖ) । ୩୬—୧—ଏତେବୋଲି ରଙ୍ଗ ପ୍ରବନ୍ଧେ କୁମାରୀ—ଘ; ରସ ପ୍ରବନ୍ଧେ—ଛ ॥

ତାଳ ମର୍ଦ୍ଦଳ ରଙ୍ଗା     ଯନ୍ତ୍ର ବଜାଇ
ଗାଇଲେ ସୁସ୍ୱରେ ଗୀତ,
ଗୀତ ସୁହାଇ     ଜଗନ୍ନାଥେ ବୋଇଲେ
ନୋହିଲା ପ୍ରବନ୍ଧ ନୃତ୍ୟ । ନା ଗୋ ସ୍ୱେ । ୩୭ ।
ରାଧିକା ରହି     କହ୍ନାଇ ନ ରହିଲେ
ଏ କଣି ନୃତ୍ୟର ସୁଖ,
ଗାସ୍ୱେଣୀ ବୋଇଲେ     କହ୍ନାଇ ରାଧିକା
ସହିଲେ ବିଚ୍ଛେଦଦୁଃଖ । ସ୍ୱଜନ ହେ । ୩୮ ।
ପୂର୍ବେ ଯେ ନୃତ୍ୟ—     ପ୍ରବନ୍ଧମାନ ଥିଲା
ଏବେ ସେ ସୁଖ କାହିଁଛୁ,
ଆମ୍ଭ ପିତାମାତା     ପ୍ରାସ୍ୱେକ ହୋଇଣ
ତାଙ୍କ ବିଚ୍ଛେଦ ହୋଇଛୁ । ସ୍ୱଜନ ହେ । ୩୯ ।
ଢତଣୁ କେବଳ     ପୂର୍ବ ସୁଖ ସୁମରି
ପ୍ରଥମେ ରହିଲୁ ଏହା,
କହ୍ନାଇ ରାଧିକା     ବିଚ୍ଛେଦ ପ୍ରବନ୍ଧ
ଏଣିକି ରହିବୁଁ ତାହା । ସ୍ୱଜନ ହେ । ୪୦ ।
ହସ୍ତ ଦେଖିବା ବୋଲି     ପ୍ରଭୁ ବୋଇଲେ
ଅର୍ଦ୍ଧମୀ. ରହିଲା ନୃତ୍ୟ,
ଚରୁକେ ତର୍ଜନୀ     କଟି କରେ ଦେଇ
ଭ୍ରମିଲା ଚକ୍ର ଯେମନ୍ତ । ନା ଗୋ ସ୍ୱେ । ୪୧ ।
ବିଚିତ୍ର ଗତି ଅଙ୍ଗ—     ଚଢ ମାରଣ
ଗଗନେ ପଶିଲା ଯାଇଁ,
ବିଜୁଳି ବେଗେ     ଆକାଶୁଁ ଖସି ଆସି
ପାଦ ଝମକିଲା ଭୂଇଁ । ନା ଗୋ ସ୍ୱେ । ୪୨ ।

---

୪୨—୩ :—ଚଦୁତ (ଚ), ବିଜୁଳୀ (ଗ) ।

ଗାବନ୍ତି ବାବନ୍ତି ପଡ଼ନ୍ତି ଜଡ଼ନ୍ତି
ନାଚନ୍ତି କାଛନ୍ତି ଛଟା,
ସକଳୀ ବୋଇଲେ ଏତେବେଳେ ସଖି
ବିଚ୍ଛେଦ ପ୍ରବନ୍ଧ ଭେଟା । ନ। ଗୋ ସ୍ୱେ । ୪୩ ।
ଗାଇଲେ ଗାୟେଣୀ ବିଚିତ୍ର କାହାଣୀ
ଗୋପପୁର କଥାମାନ,
କୃଷ୍ଣ ଗଲ ଦିନୁଁ ସମସ୍ତେ କାମିଣୀ
ଖାଜୁଁ ନ ସରଇ ଦିନ । ନା ଗୋ ସ୍ୱେ । ୪୪ ।
ଅଧିଗ୍ରାମ ବନେ ବୃଷଭାନୁ ଘର
ବିବିଧ ରତ୍ନେ ଘଟଣ,
ନନ୍ଦୀଶ୍ୱର ବନେ ନନ୍ଦ ରତ୍ନପୁର
ଖଳ ହେଲ ରଣଭଣ । ଦଇବ ହେ । ୪୫ ।
ପଟା ମଣ୍ଡୋଇ ଦୁମୁ ଦୁମୁ ଖଜଲ
ଖଜଲ ନାଟ-ମନ୍ଦିର,
ଭଦ୍ର ଚଉପାଢ଼ି ଉପୁଡ଼ି ପଡ଼ିଲ
ଝଡ଼ିଲ ଅଟାଳ ପୁର । ଦଇବ ହେ । ୪୬ ।
ଝୋଷ୍ଟ ଗବାକ୍ଷ ମେଘନାଦ ଖଜଲ
ଖଜଲ ଜନ୍ମ ମଣ୍ଡୋଇ
ଚନ୍ଦ୍ରମଣ୍ଡଳ ପୁର ଝଡ଼ି ପଡ଼ିଲ
ଦେଖିଲେ ଡର ମାଡ଼ଇ । ଦଇବ ହେ । ୪୭ ।
ଜଗତି ଘର ଝଲ— ରତ୍ନ ମନ୍ଦିର
ବ୍ରହ୍ମପୁର ଗଲ ଝଡ଼ି,
ବିବିଧ ରତ୍ନ ପାଷାଣ ପାଲଟିଲେ
ଯେ ଯହିଁ ଠାବରେ ପଡ଼ି । ଦଇବ ହେ । ୪୮ ।

---

୪୮—୪:—ଠାବେଣ (କ) । ୪୬—୨:—ସନ୍ଧେଇ ଗଲେ (କ) ।
୪୬—୧:—ପଟା ମୁଣ୍ଡୋଇ (ଖ, ଗ); (୪୬-୪) ଉଡ଼ିଲ ଅଟାଳ ପୁର (କ, ଖ

ମୁକ୍ତାନିଧି ପୁର ନକ୍ଷତ୍ର ପ୍ରାସ୍ତେକ
ଗଗନେ ସମ୍ଭାଇ ଗଲେ,
ଗୋପ ଲୋକ ଶୋକ କହୁଁ ନ ସରଇ,
ଏଡ଼େ କର୍ମ ହରି କଲେ । ଦଇବ ହେ । ୪୯ ।

ସୂର୍ଯ୍ୟକାନ୍ତ ପୁର ବ୍ରଜସ୍ଥା ନବର
ଅବାସ୍ତେ ପଡ଼ିଲା ଭଜ
ଗୁଣନିଧି ପୁର ମଦନ-ମନ୍ଦର
କେବଳ ଅଛୁ ଆବଜ । ଦଇବ ହେ । ୫୦।

ଗୃହେ ନ ପଶନ୍ତି କେଶ ନ ବାନ୍ଧନ୍ତି
ନ ପିନ୍ଧନ୍ତି ସ୍ତ୍ରୀନବାସ,
ନ ରାନ୍ଧନ୍ତି ଅନ୍ନ ନ ଭୁଞ୍ଜେ ଭୋଜନ
ତେଜିଲେ ଜୀବନ ଆଶ । ଦଇବ ହେ । ୫୧ ।

କେବଳ ଆସିବା ପ୍ରତ୍ୟାଶା ଥିଲା
ଯିବାବେଳେ କହିଥିଲେ,
ଦ୍ୱାରକା ବ୍ରଜସ୍ତେ ବାରତା ପାଇଣ
ନିରାଶ ହୋଇ ରହିଲେ । ଦଇବ ହେ । ୫୨ ।

ବସ୍ତ୍ରଲେ ନନ୍ଦ ନୃପଭୋଗ ତେଜି
ସୁରଭି ରଖିବେ ଆସି,
ଦେବ ଋଷି ସଙ୍ଗ ସଖି ତେଜ କ ସେ
ବରଜ ସଭାରେ ବସି । ଦଇବ ହେ । ୫୩ ।

ନିରନ୍ତରେ ଗୋପ କୁମାରେ କାନ୍ଦନ୍ତି
ତରୁ ଲତା ଗଣ ସ୍କନ୍ଧି,
ସୁରଭିବୃନ୍ଦହିଁ ତୃଣ ନ ଚରନ୍ତି
ନ ଦ୍ୟନ୍ତି କ୍ଷୀର ଦୁହାଁଇ । ଦଇବ ହେ । ୫୪ ।

ଗୋପୀମାନେ ଘର ତେଜି ମୋହଭର
କାହିଁ ନ ପାରନ୍ତ ରନ୍ଧ,
କ୍ଷଣେ କ୍ଷଣେ ଘୋର ଅରଣ୍ୟେ ପଶନ୍ତ
ଯେସନେ ଭୁଲନ୍ତ ବାଇ । ଦଇବ ହେ । ୫୫ ।

ତରୁ ଲତା ଗୃହି ସେବନ କରନ୍ତ
ହା କୃଷ୍ଣ ହା କୃଷ୍ଣ ବୋଲି,
କ୍ରୀଡ଼ା ସ୍ଥାନ ଗୃହି ଉଠନ୍ତ ବୋବାଇ
ଅଛ କି ହେ ବନମାଳୀ । ଦଇବ ହେ । ୫୬ ।

ନାହିଁତ ବୋଲି ମସ୍ତକେ କର ମାରି
ପଡ଼ନ୍ତ କମ୍ପିତ ହୋଇ,
ଧାଇଁ ପଡ଼ି ସଖୀ କୋଳ କରି ଧରି
ସେହୁ ଉଠଇ ବୋବାଇ । ଦଇବ ହେ । ୫୭ ।

ଛାଡ଼ ଛାଡ଼ ସଖି ମୁଁ ବଡ଼ ନମଁଖୀ
କେ ମୋତେ ନେଉଛନ୍ତି ଅଛି
ଯେ ମୋତେ ରଖିବ ଜାଣୁ କି ସଙ୍ଘାତ
କଉଁ ବନେ ଲୁଚିଅଛି । ଦଇବ ହେ । ୫୮ ।

ତୋତେ ଭାଳୁ କି ମୋତେ ସମ୍ଭାଳୁ
ଛାଡ଼ି ମେଲ ମୋର ଆଶ,
ପାରିଲେ ଯାଇଁ ରାଧାକୁ ସମ୍ଭାଳ, ଯା
ନକି ହୋନ୍ତ ପ୍ରାଣ ନାଶ । ଦଇବ ହେ । ୫୯ ।

ସଖୀଙ୍କ ସମ୍ଭାଳି ଆସନ୍ତେ ସଜନୀ
ଯମୁନା-ପୁଳିନ-ବନେ,
ଦେଖିଲେ ରାଧିକା ଏକାନ୍ତେ ଭାଳନ୍ତ
ବର୍ଷିଣ କେଳି ସଦନେ । ଦଇବ ହେ । ୬୦ ।

ଖୋଜ ଖୋଜ ବନେ ଶରଦ ସୁନ୍ଦରୀ
ସେହୁ ମିଳିଗଲ ଆସି,
ସଖୀ ମୁଖ ଶୁଣି ଲୋତକ ବହଇ
ଶଶୀ କି ସୁଧା ବରଷି ? । ଦଇବ ହେ । ୭୧ ।
ଯେ ଯେଉଁଣେ ଥିଲେ । ଯୁବତୀଯୂଥ ଆସି
ବେଢ଼ି ବସିଲେ ପାରୁଣ,
ହା କୃଷ୍ଣ ହା କୃଷ୍ଣ ବୋଲି ସବୁ ସଖୀ
ମୁଖେ କଲେ ଉଚ୍ଚ ଘୋଷ । ଦଇବ ହେ । ୭୨ ।
ରାଧାରମଣ ଅଗ— ବନ୍ଦ ଚରଣ
ବିନୁ ନୋହେ ଆନ ଗତ,
ମନ ଲୋଚନ ଜ୍ଞାନେ ଦେବ ଚନ୍ଦ୍ରଇ
ବୃଷଭାନୁ-ସୁତା-ପତ । ଦଇବ ହେ । ୭୩ ।
ଇତ ଶ୍ରୀ ରହସ୍ୟମଞ୍ଜରୀ ନବମ ଛାନ୍ଦେ,
ଦ୍ୱାରକାମଣ୍ଡଳେ ନୃତ୍ୟଗୀତ ବନ୍ଧେ,
ଦଶମ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଚରିତ୍ର
କହିବାକୁ ଆଜ୍ଞା ହେଉ ଅନାଦ ଅଚ୍ୟୁତ । ୯ ।

—ः(୦)ः—

## ଦଶମ ନବମ ଛାନ୍ଦ

—❋—

ତାଳ ଝମ୍ପା, ଭୂଲାଭ୍ରଣୀ ବାଣୀରେ ଗାଇବ ।

ରାମ—ମହ୍ଲାର ।

ଚରଣ ଅରୁଣ ରାଜେ,
(ଘୋଷା) କନକ ନୂପୁର ସାଜେ,
କଟି କିଙ୍କିଣୀ-ଧ୍ୱନି ଠଣରଣ କଙ୍କଣ ଝଙ୍କ ବାଜେ ।

(ଗୋ) ସଖି ରୁ ଯାଉ କନା,
କନାଇ ପାଶକୁ ଯାଉ କ ନା,
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନଉ କି ନା । ୧ ।
ସଜଳ ଜଳଦ କାନ୍ତ,
ନୀଳମଣି ଜିଣି ଶାନ୍ତ,
ଅମଳ କମଳ ମୁଖ ମଣ୍ଡଳ ଅଳକ ଅଲକାପନ୍ତ,
ଗୋ ଦୂତ ରୁ ଯାଉ କ ନା । ୨ ।
ଅରୁଣ ଅଧର ସାଜେ,
ମୂରଲୀ ମଧୁର ବାଜେ,
ନାସେ ମୋତିବର ଗଗନେ କ ଶୁକ୍ର ଅଧରପରେ ବସେ,
ଗୋ ସଖି ରୁ ଯାଉ କ ନା । ୩ ।
ଭାଲେ ଚନ୍ଦନର ବିନ୍ଦୁ,
(ଗୋ) ନବଡ଼ ଜଳଦେ ଇନ୍ଦୁ
ମଣ୍ଡିତ କୁଣ୍ଡଳ ଗଣ୍ଡମଣ୍ଡଳ ଚଣ୍ଡ କିରଣ ନିନ୍ଦୁ,
ଗୋ ଦୂତ ରୁ ଯାଉ କ ନା । ୪ ।
କୁଟିଳ କୁନ୍ତଳ ଚୂଳେ,
ରଞ୍ଜିତ ବିବିଧ ଫୁଲେ,
ବାସେ ଝଳମଳ ମୟୂରପୁଚ୍ଛ ମତ୍ତ ମଧୁକର ଭୁଲେ,
ଗୋ ସଖି ରୁ ଯାଉ କ ନା । ୫ ।
ମୋତେ ସଜ କର ସଖି,
(ମୁଁ) କହ୍ନାଇଙ୍କ ଯିବ ଦେଖି,
ମୁରଲୀ ବଜାଇ ମନ୍ଦ ମନ୍ଦ କର ଦୂରୁଁ ଠାରୁ ଥାଉଁ ଆଖି ।
ଗୋ ଦୂତ ରୁ । ୬ ।

---

କଙ୍କଣ ଝଣ ବାଜେ [ଚଛ]; ୧-୩) ଗୋ କହ୍ନାଇ ଆଗରେ କହୁ କନା [କ], ମୋପାଇଁ କୃଷ୍ଣଙ୍କୁ କହୁ କ ନା (ଘ) ।
୬—୧:—ଷାନ୍ତ ପ୍ରାପ୍ତ ସବୁ ପୋଥିରେ

ମୋର ଚରଣେ ଦଅ ପାହୁଡ଼,
(ମୁଁ) ବନେ କରୁଥିବ ଧାଉଡ଼
ପାଦ ରୁଣ ଝୁଣ ଶବଦ ଶୁଣିଣ କହ୍ନାଇ ଆହୁଡ଼ ବାହୁଡ଼ ।
ଗୋ ସଖି ରୂ । ୭ ।

ନେତପିନ୍ଧସ୍ୱା ମଣ୍ଡାପଡ଼ସ୍ୱା,
(ମୁଁ) କହ୍ନାଇଙ୍କି ଯିବ ଲେଉଡ଼ସ୍ୱା ।
ଖଞ୍ଜି କଂରେ ଚୂଡ଼ ଗୁଞ୍ଜରବନ୍ଧ ସମନାଥ ଗରଗଡ଼ସ୍ୱା ।
ଗୋ ଦୂତ ରୂ । ୮ ।

ରୁଣ ଦାମ·ପଣ ବନ୍ଧ,
(ମୋର) ବାହୁଟି ଉପରେ ବାନ୍ଧ
ଶ୍ରବଣେ ଭର ମୋ ଝଲକ ଚନ୍ଦ ଫେରନ୍ତା ମୁକୁତାବନ୍ଧ ।
ଗୋ ସଖି ରୂ ଯାଉ କ ନା । ୯ ।
(ମୋର) ମୁକୁତା ପାଞ୍ଚଗୋଟିଆ,
(ଖଞ୍ଜିଦେ) ମୋର ନାସାପୁଟିଆ,
(ମୋର) କହ୍ନାଇ ପାଶକୁ ବାଜ ଯାଉଥିବ ଝମକ ଝମକ ଝୁଣ୍ଟିଆ ।
ଗୋ ସଖି ରୂ । ୧୦ ।

ଏତେ କହୁ କଣ ବାଳୀ,
ମୋହେଣ ପଡ଼ିଲା ଢଳି
ଧାଇଁ ଧଣ ସଖି ସେଦନ କରନ୍ତି ଆଲଟ ଚାମର ଢାଳି ।
ଗୋ ଦୂତ ରୂ । ୧୧ ।
ଗୋବନ୍ଦ ଗୋବନ୍ଦ ବାଦ୍ୟ,
ଗଗନେ ଉଛୁଳେ ନାଦ
ଦେବ କହେ ପ୍ରଭୁ କେବେହେଁ ନୋହୁବ ଗୋବନ୍ଦଙ୍କ ବିଚ୍ଛେଦ । ୧୨।
ଇତ ଶ୍ରୀ ରହସ୍ୟମଞ୍ଜରୀ ଦଶମ ଗ୍ରନ୍ଥେ,
ରାଧିକାପ୍ରଳାପ ଗୋପୀ ବିଳାପ ବନ୍ଧେ,

ଏକାଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ପ୍ରସ୍ତାବ,
କହିବାକୁ ଆଜ୍ଞା ଦେଉ ଶ୍ରୀ ମୁଖ ପ୍ରଭୁ ଆପ । ୧୦ ।

—:)୦(:—

## ଏକାଦଶ ଛାନ୍ଦ ।

❋୦❋

ରାଗ — ମଙ୍ଗଳଧନାଶ୍ରୀ

ଏଥୁଅନନ୍ତରେ କୃଷ୍ଣ ଦ୍ୱାରବତୀପୁରେ,
ରହିଛି ହାପନେ ବସେ ପଲଙ୍କ ଉପରେ । ୧ ।
ଯୁବତୀସମୂହ ବେଢ଼ିଅଛନ୍ତି ପାଖୁରେ,
ସମସ୍ତେ ବେଢ଼ିଲେ ଗୀତ ବାଦ୍ୟ ନୃତ୍ୟରସେ । ୨ ।
ଗାନ୍ଧର୍ବୀଙ୍କ ଗଣ୍ଡ ଭ୍ରୂ ନନ୍ତ ଗ୍ରୀବା ତରଙ୍ଗ,
ଦେଖିଣ ନ ଟଳେ ମନ ଲୋଚନ ସେ ଅଙ୍ଗ । ୩ ।
କ୍ଷଣେ କ୍ଷଣେ ମୋହ ଯାଇ ଗଡ଼ନ୍ତି ମୁରାରି,
କ୍ଷଣେ କ୍ଷଣେ ଉଠି ଗାନ୍ଧର୍ବୀଙ୍କି ତଲେ କରି । ୪ ।
ଗାବନ୍ତି ଗାନ୍ଧର୍ବୀ ଯିସ ବାବନ୍ତି ସେ ଯାହା,
ହସ୍ତ ପାଦ ଯେନ ବାଣ୍ଟି ଦେଖାବନ୍ତି ତାହା । ୫ ।
ନୟନର ଭଙ୍ଗୀ ଦେଖି ହୃଦୟ କାତର,
କାନ୍ଦନ୍ତି କାଛନ୍ତି ଛବ ବଚଡ୍ର ଗ୍ରହର । ୬ ।
ତାଳ ତାନ ମାନ ଘଞ୍ଚ ଘୋର ଏ ମୂର୍ଚ୍ଛନା
ଉପାଙ୍ଗ ମର୍ଦ୍ଦଳ ସ୍ୱରମଣ୍ଡଳ ଏ ବୀଣା । ୭ ।
ପିନାକ ଅମୃତି ରବା ତମ୍ପ ଯେ ଦୋସରି,
ଝଙ୍କାର ଉଙ୍କାର ନାଦେ ବ୍ରହ୍ମାଣ୍ଡକୁ ପୂରି । ୮ ।

---

୩—୨:—ମନ ନୟନ ଅନଙ୍ଗ (ଖ, ଗ), ଲୋଚନ ଅନଙ୍ଗ (ଘ) ।

ଗାବନ୍ତି ରାଧିକା ବଚନ ମୋହର ପ୍ରଳାପ,
ବ୍ରଜବଧୂବୃନ୍ଦ ବେଢ଼ିକରନ୍ତି ବିଳାପ । ୯ ।
ଗୋପେଶ୍ୱର ନାମେ ବନମଧ୍ୟେ ମହାଦେବ,
ପାର୍ବତୀ ସଙ୍ଗତେ ହର କ୍ରୀଡ଼ା ରଙ୍ଗ ଭାବ । ୧୦ ।
ଗୋପୀଙ୍କ ରୋଦନ ସ୍ୱର ସୁରସ ସୁବାଣୀ,
ଶତ ସରସ୍ୱତୀ ବୀଣା ଗୀତ ସ୍ୱର ଜିଣି । ୧୧ ।
କ୍ରୀଡ଼ାଭଙ୍ଗ ହୋଇ ହର ପାର୍ବତୀ ଉଠିଲେ,
ଗୋପୀଙ୍କ ରୋଦନସ୍ଥାନେ ବିଜୟ ସେ କଲେ । ୧୨ ।
ଉହାଡ଼େ ରହିଲେ ହର ଧବଳ ମୂରତି,
ପାର୍ବତୀ ମିଳିଲେ ଯାଇଁ ଗୋପୀଙ୍କର ଛତି । ୧୩ ।
ନ କର ସନ୍ତାପ ତୁମ୍ଭେ ସକଳ ଯୁବତୀ,
ନିକଟେ ଆସିବେ ମାଏ ତୁମ୍ଭ ପ୍ରାଣପତି । ୧୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ କାମାକ୍ଷୀ,
ତତକ୍ଷଣ ଚେତନା ପାଇ ଚାହାନ୍ତି ମୃଗାକ୍ଷୀ । ୧୫ ।
ମନେ ବିଚାରିଲେ ଏ ତ ଅନ୍ତର୍ଷ କାମିନୀ,
ନିଶ୍ଚୟେ ଆସିଣ ଥିବେ ଦୁଃଖର ନାଶିନୀ । ୧୬ ।
ମହାରାସ ପୀଠ ଅଷ୍ଟଦଳଦ୍ୱାରେ ସ୍ଥିତ,
ବନ ଉପବନ ମଧ୍ୟେ ସମ୍ମୁଖେ ବସନ୍ତ । ୧୭ ।
ମହାଶମ୍ଭୁ ପ୍ରିୟା ଏ ଅନାଦ୍ୟ ଆଦ୍ୟନାରୀ,
ଏହାଙ୍କ ପ୍ରସନ୍ନେ ସର୍ବ ଦୁଃଖ ହୋଏ ପାରି । ୧୮ ।
ଏହାଙ୍କୁ ଅର୍ଚ୍ଚିଣ ପୂର୍ବ ଇଶାଣ ସେ ଦଳେ,
କୃଷ୍ଣ ପତି ପାଇଥିଲୁ ପୁଣ୍ୟର ସେ ବଳେ । ୧୯ ।
କର୍ମର ଅବଳେ ଧର୍ମ ହରାଇଲୁ ଏବେ ।
ପାଳିଛି ରହିବ ପିଠି ଦେଇ ଧର୍ମ ସେବେ । ୨୦ ।

---

୨୦—୨:—ପାଳିଛିବ ଧର୍ମ କର୍ମ ପିଠି ଦେବ ସେବେ (ଚ)

କେ ଆମ୍ଭର ଇଷ୍ଟଗୁରୁ ଦେବତା ହୋଇବ,
କାହା ଯୋଗୁଁ ଅନ୍ଧ ଦ୍ରବ୍ୟ ଲୋଚନ ପାଇବ । ୨୧ ।
ତ୍ୟାଗିଲ ପିଣ୍ଡରେ କେହୁ ପୂରେଇବ ପ୍ରାଣ,
ନମାଛୀ ପରାଣୀ ଆମ୍ଭେ ତାହାରେ ଶରଣ । ୨୨ ।
ଶରଣତାରଣୀ ସେ ଅନାଦ୍ୟ ହରପ୍ରିୟା,
ଅନାଥମା ଦେଖିଣ ସେ କରିଗଲେ ଦୟା । ୨୩ ।
ତାହାଙ୍କ କୃପାରୁ ନଷ୍ଟେ ପାଇବୁ ମୁରାରି,
ପୁଣି ପ୍ରତିଆଶା ଧରି ମନକୁ ତଆରି । ୨୪ ।
ରାଧିକା ବୋଇଲେ ସଖି ଶୁଣ ମୋ ବଚନ,
ସତେକି ଆସିବେ ହରି ଥିବ ଏ ଜୀବନ । ୨୫ ।
ପ୍ରାଣ ସମ୍ଭାଳିବା ଦେହେ ବହୁତ ସନ୍ଦେହ,
କୃଷ୍ଣ ବିନୁ କ୍ଷଣେ ଏଥେ ନ ଲଗଇ ମୋହ । ୨୬ ।
କଷ୍ଟ ଦେହ ଇଚ୍ଛି, କୃଷ୍ଣ-ସୁଖ ଲଭ ଅର୍ଥେ,
କୃଷ୍ଣ ବିନୁ ଜୀବ ଥିବ କାହାର ନିମନ୍ତେ । ୨୭ ।
ସେ ତେଣେ ଝିଙ୍କଇ ଆମ୍ଭେ ଏଣେ ଝିଙ୍କି ଧରି,
ଝିଙ୍କାଝିଙ୍କି ଦ୍ରବ୍ୟ କେତେବେଳେ ରଖିପାରି । ୨୮ ।
ନୟନୁ ଉପୁଡ଼ି ଗଲା ନଳିନ ଡାକୁଣୀ,
ଆବୋର ରହିଛୁ ସେ ଲାଗିବ ବୋଲି ପୁଣି । ୨୯ ।
ପୋଡ଼ ଏ ଜୀବନ ସଖି ରହିଛୁ କିପାଇଁ,
ବଅର୍ଥ କାରଣେ ଏଥେ ହନ୍ତୁ ସନ୍ତୁ ହୋଇ । ୩୦ ।
ହରି ବିନୁ ନ ରୁଚଇ କେଉଁଣିହି ରସ,
ବିବିଧ ବ୍ୟଞ୍ଜନ ଅନ୍ନ ଲାଗଇ ସେ ବିଷ । ୩୧ ।

---

୨୭—୧ :—ଏ ଦେହ ରଖିଛୁ କୃଷ୍ଣ (ଗ),
୩୦—୨:—ହନ୍ତୁ ସନ୍ତୁ (ଗ, ଘ) ।
୩୧—୧:—କେଉଣସି (କ, ଖ) ।

ଯେବଣ ଯମୁନା ନଦୀ ଜଳ ପରିମଳ,
ଗ୍ରୀଷମେ ତାକ୍ଷଣେ ଆତ୍ମା କରଇ ଶୀତଳ । ୩୨ ।
ସାତ ଚଣି ଗଙ୍ଗବାଣ ମିଶାଇ ପଇଡ଼,
କର୍ପୂର ମରିଚ ଯୁକ୍ତ ସ୍ୱାଦରସ ବଡ଼ । ୩୩ ।
ସେ ଜଳ ପିଇଲେ ଏବେ ଆତ୍ମା ବଇକୁଳ,
ମଳୟ ପବନ ବହେ ଅଗ୍ନି ସମତୁଲ । ୩୪ ।
ଯେବଣ ବନରେ ପଶି ସର୍ବଦୁଃଖ ହର,
ସେ ବନ ହୋଇଲା ଏବେ ପ୍ରାଣକୁ ବଇରୀ । ୩୫ ।
ଯେବଣ ସୁସ୍ୱାଦ ପକ୍ୱଫଳେ ମନ ଲୋଭି
ସେ ଫଳ ଦେଖିଲେ ଏବେ ଉଦୁଗର ଆସି । ୩୬ ।
ଯେବଣ କୁସୁମ ଗନ୍ଧେ ନାସିକା ସନ୍ତୋଷ,
ସେ ଗନ୍ଧ ହୋଇଲା ଏବେ ପ୍ରାଣକୁ ପରୀସ । ୩୭ ।
ଯେବଣ କୋକିଳ ସ୍ୱର ଶୁଣି ତ ଶରଧା,
ସେ ସ୍ୱର ଫୁଟାଇ ଏବେ ହୃଦେ କୁନ୍ତବାଧା । ୩୮ ।
ଯେବଣ ମୟୂର ଦୃକୁ ତେଜଇ କମାଣ,
ଅହଙ୍କାରେ ମାରେ ଏବେ ଅନୁକ୍ଷଣେ ବାଣ । ୩୯ ।
ଏତେ ଅରିଷ୍ଟରୁ ବର୍ତ୍ତିଥିବା ଗୋ କେମନ୍ତେ,
ସତେହେଁ ଆସିବେ କି ରୁକ୍ମିଣୀଦେବୀ-କାନ୍ତେ । ୪୦ ।
ଦୂତିକା ବୋଇଲେ ଯାହା କହିଲେ ଭବାନୀ,
ସେ କାହୁଁ ହୋଇବ ଆନ ଶୁଣିମା ସଜନି । ୪୧ ।
ଅବଶ୍ୟ ଆସିବେ ହରି ଏ କଥା ପ୍ରମାଣ,
କୃଷ୍ଣ ପ୍ରାଣପ୍ରିୟା ତୁମ୍ଭେ ଥିର କର ମନ । ୪୨ ।

---

୩୨—୨:—ବିରସ ମତରେ ଆତ୍ମା କରଇ ବିକଳ (କ) । ୩୬—୨:—ଉପକାର (କ) ୩୯—୨:—ଏବେ ସେ ଶର ମଦନ (ଗ) । ୪୧—୨:—ଶୁଣିମା ଗୋପାଣୀ (ଚ)

ଏବେ ଠାକୁରାଣୀ ବେଜେ କର ଗୋ ସତ୍ୱରେ,
ସମସ୍ତେ ମିଳନ୍ତୁ ଯାଇଁ ଯେ ଯାହା ଭୁବନେ । ୪୩ ।
ଭୋଜନ ସତ୍ୱରେ ତନୁ ପୁଷ୍ଟ କର ସଖି,
ଅତଇଁ ଅଧୈର୍ଯ୍ୟ ଗୋ ନୋହିବା ଚନ୍ଦ୍ରମୁଖି । ୪୪ ।
ଏତେ ବୋଲି ସୁଶୀତଳ ଜଳେ ମୁଖ ଧୋଇ,
ଅଞ୍ଚଳେ ପୋଛଣ ବାଳୀ ବଞ୍ଚଣୀ ବଞ୍ଚଇ । ୪୫ ।
ବେଦ ପାରୁଣରେ ସଖୀ ବାହ୍ୟାଳସ ଦେଇ,
ବୃନ୍ଦାବନ ମନ୍ଦିରକୁ ଆଣନ୍ତି ଚଳାଇ । ୪୬ ।
ମାଜଣା ମର୍ଦ୍ଦନ ସାରି ପୁରି ସବୁ ଶୋଧି,
ଅମୃତ ମଣୋହି ତାଙ୍କୁ କରାଇଲେ ନେଇ । ୪୭ ।
ପଲଙ୍କ ଉପରେ ବଜେ କରାଇ ସୁନ୍ଦରୀ,
ଆଜ୍ଞା ମାଗି ବଜେ କଲେ ଯେ ଯାହାର ପୁରୀ । ୪୮ ।
ସ୍ନାହାନ ଭୋଜନ ସାରି ଯେଝାମନ୍ଦିର ରହି,
କ୍ଷଣେ କ୍ଷଣେ ପ୍ରଭୁଙ୍କ ଆସିବା ବାଟ ଚାହିଁ । ୪୯ ।
ଶ୍ରୀରାଧାପତି ଚରଣେ କରନ୍ତିରେ ଆଶ,
ଶରଣ ମାଗଇ ଦେବ ଦୁର୍ଲ୍ଲଭ ଯେ ଦାସ । ୫୦ ।
ଇତି ଶ୍ରୀ ରହସ୍ୟମଞ୍ଜରୀ ଏକାଦଶ ଛାନ୍ଦେ,
ଗୋପିକା ବେଦନେ ଉମାପ୍ରଦନ୍ନ ପ୍ରବନ୍ଧେ,
ଦ୍ୱାଦଶ ଛାନ୍ଦ ବର୍ଣ୍ଣିନେ କେବଣ କେବଣ ଆନ୍ତର
କହିବାକୁ ଆଜ୍ଞା ହେଉ ପ୍ରଭୁ ଏଥର ଯେ ବରର । ୧୧ ।

—୦—

୪୧ ୨:—ଶୁଣିମା ଗୋସାଣୀ (ଚ) । ୪୪—୨:—ଅତି ଅଧଇର୍ଯ୍ୟ (ଖ, ଗ) । ୪୭—୧:—ବାହ୍ୟାନାଦ (ଖ,ଗ ଛ), ବାହ୍ୟାଲୁର (ଚ) ବାହ୍ୟାଭର (ଘ) । ୪୬—୨: ଆସନ୍ତି ଚଳାଇ (ଘ, ଚ) । ୪୭—୧:—ମର୍ଦ୍ଦନ କରି (ଖ, ଗ, ଚ) ।

## ଦ୍ୱାଦଶ ଛାନ୍ଦ ।

*:o:*

ରାଗ—କରୁଣା ଶ୍ରୀଟିଆର

ମହା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହିଲା ଝଞ୍ଜା ପବନ କୃଶାନୁ ବତାଶ ।
ପାଚିଲା ଆମ୍ବ ପଣସ ତାଳଲେ ସଲିଳ,
ଜଳିଲା ଶରୀର ମୋ ଟଳିଲା କଳେବର । ଘୋଷା ।
ମୁଁ ଗୋ ମଲି ମଲି ମଲି,
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି । ୧ ।
ଗମ୍ଭୀର ଘରରେ ଗୋ ଗ୍ରୀଷମେ ନୋହେ ଶୋଇ,
ଦକ୍ଷିଣ ମେଲି ମନ୍ଦରେ ପ୍ରଭୁ ପଲଙ୍କ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଲାବୋଲି । ୨ ।
ଫୁଟି ତାଳସଜ ପଣା ପଇଡ଼ କଦଳୀ,
କର୍ପୂର ମରିଚ ଖଣ୍ଡ ସିଙ୍ଗଡ଼ା ତାମ୍ବୁଳ ।
ମଣୋହି କରଣ ସେହୁ ଖୁଆଇଣ ଖାଇ,
ସୁଖ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ । ୩ ।
ଶରଭ ସମ୍ପୂର୍ଣ୍ଣେ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋନ୍ତେ,
ଗାଜିଲେ ଗଗନେ ମେଘ ସାଜିଲି ବରଷା,
କି ଜାଣି ନିବିଡ଼ ଘୋର ଅନ୍ଧକାର ନିଶା । ୪ ।
ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି,
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି,
ବିଜୁଳି ଝମକେ ଗୋ ଚମକି ଉଠେ ହିଆ,
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା । ୫ ।

କମଳମା ବରଷଂଟିଲେ, ଅବନୀ ଭୂଷି,
ମାଉଲେ ମଣ୍ଡୁକ ଯେ ଡାହୁକ ଡାକେ ପିଶି,
ନଦୀ ଯୋଡ଼ ବଢ଼ିଲେ, ଜଢ଼ିଲେ ପୁନାଗଗ୍ରୀ,
ସୁବେଶ ଯୁବତୀ କାନ୍ତ ପଥ ଅନୁସର । ୬ ।
ପ୍ରବାସୀ ପୁରୁଷମାନେ ସବ କାର୍ଯ୍ୟ ଛାଡ଼ି,
ଘରକୁ ଅଇଲେ ପ୍ରିୟା ଗୁଣ ମନେ ପଡ଼ି,
ଏକମାତ୍ର ମୋର କାନ୍ତ ନଇଲେ ମୋ ପାଶ,
ନଚସ୍ତେ ଜାଣିଲି ମୋର ତେଜିଲେ ମୁହିଁ ଆଶ । ୭ ।
ଭାଦ୍ରବର ଅନ୍ତେ ସଖି ଆସିଣ ପଶନ୍ତେ,
ପ୍ରବେଶ ଶରଦ ଋତୁ ପ୍ରତେଜ ଆଦତ୍ୟ,
ଗଗନୁ ଝଡ଼ିଲା ଦ୍ରୁମ, ମଣ୍ଡି ଫଣୀ ପଶେ,
ବରଷା ବଞ୍ଚାଇ ମେଘ ନାନାବର୍ଣ୍ଣ ଦଶେ । ୮ ।
ଉତ୍ତରୁ ଅଇଲା ଶୀତ ବିକାଳା କୁମାରୀ,
କାନ୍ତ ଥିଲା କାମିନଙ୍କି ଦୂରୁଁ ଅପସରି,
ଫୁଟିଲେ କୈରବ କିଆଁ ଚନ୍ଦ୍ରକାନ୍ତ ବନ୍ତେ,
ଶ୍ରୋଣୋଦ୍ଧା ରଥ ଅରତେ ଶ୍ରୋଣେଣ୍ଟ କ ଲେକ୍ତେ । ୯ ।
କାର୍ତ୍ତିକ ସରନ୍ତେ ସଖି ମରୁଣିର ଆସେ,
ଜାକର ପଡ଼ିଲା ଦ୍ରୁମ ଋତୁ ପରକାଶେ,
ଦହିଲା କମଳ ବନ, ବଢ଼ିଲା ଉତ୍ତର,
ସୁଥିର ହୋଇଲା ସିନ୍ଧୁ ସଧୀର ଲହରୀ । ୧୦ ।
ମରୁଆ ହସିଲା, କୁନ୍ଦ ଦେଖିଣ ବକାଣ,
ଗାଇଲେ ଗାଆନ୍ତା ଶୀତ ଗୁଣ୍ଡକେଶୀ ରସ,
ଭୁଟିଗଲେ ନଦୀ ସବ, ଫିଟିଗଲେ ବାଟ,
ଧନ ଆସି ପାହିଗଲା କାନ୍ତ ନାହିଁ ଭେଟ । ୧୧ ।

୮—୪ :—ବରଷାଭଣ୍ଡାଇ—ଖ ଛ । ୯—୪ :—ଶ୍ରୋଣୋଦ୍ଧ [ଗ, ଘ] ।

ସିହ୍ଲା କେସର ସଖି ଗୁଆ ଘୃତେ ପୋଇ,
କର୍ପୂର ମରିଚ ମେଳି ମିଠା ଦୁଗ୍ଧେ ମୋହ୍ନ,
ଘାଣଆଖଣ୍ଡ ମିଶାଇ ବଟା ଭରି ଥୋଇ,
ଶସ୍ତ୍ରିନ ଦଳଙ୍କେ କାନ୍ତ ଅଧରେ ଯୋଗାଇ । ୧୨ ।
ପୌଷର ଅନ୍ତରେ ସଖି ମକର ପ୍ରଖ୍ୟାତ,
ତ୍ରିବେଣୀ ଶିଶିର ଋତୁ ପବିତ୍ର ଜଗତ,
ମକର ସ୍ନାହାନ ଜନେ ଧର୍ମ ଅର୍ଥେ କରି,
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବପୁଚ୍ଛରି । ୧୩ ।
ଫୁଟିଲା ମାଧବୀ ଗୋ ଗୁଟିଲା କର୍ଣ୍ଣିଫୁଲ,
ଉଠିଲା କଞ୍ଚନ କଢ଼ି କାମ-ଶର ତୁଲ,
ଲେହୁଟିଲା ଉତ୍ତର ପବନ ନିଜ ସ୍ଥାନ,
ଉଠିଲା ଲହରୀ ସିନ୍ଧୁ ଅନଳର ଫେନ । ୧୪ ।
କାକ ଗର୍ଭ ଦେଖି ସଖି ହୋଇଲି ଚକିତ,
ଏତେବେଳେ ନ ଭେଟିଲି ରହସ୍ୟ-ବାରତ,
କୁହୁବେଲ ଚଉଁରଳେ ଅତି ଉଗ୍ରଗନ୍ଧ,
ଚୂତର ବଉଳ ଦେଖି କୋକିଳ ଆନନ୍ଦ । ୧୫ ।
ମକର ସରନ୍ତେ ସଖି ଫଗୁଣର ଅନ୍ତେ,
ଆଇଲା ବସନ୍ତ ଋତୁ ଅନଙ୍ଗ ସଙ୍ଗତେ,
ବହିଲାକ ମଳୟପବନ ଗନ୍ଧ ତୁଲେ,
ପଲ୍ଲବଲେ ତରୁଲତା ଫୁଟିଗଲେ ଫୁଲେ । ୧୬ ।
ଗୁତେଶ୍ୱ ଗହଳ ସଖି ଗୋବିନ୍ଦଙ୍କ ଦୋଳ,
ସବଂସୁଖ ଦୋଳଗଲେ ମଦନ ଗୋପାଳ,
କହୁଁ କହୁଁ ଚୂତ ବୃକ୍ଷେ ଧରିଗଲେ କଷି,
କୋକିଳ କୀଡ଼ଇ ଚୂତ ଡାଳେ ଡାଳେ ବସି । ୧୭ ।

---

୧୫—୩—କୁହୁବୋଲ ପ୍ରକାଶିଲ (କ,ଖ) । ୧୬—୧—ଫଗୁଣ ପଣନ୍ତେ ଛ ।

ଚଳନ୍ତ ମାସରେ ରାଧାମାଧବ ସୁମର,
ବୃନ୍ଦାବନେ ପଶିଣ କେଉଁର ଅନୁସର,
ଦେଖନ୍ତି ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖୀ କର ୪ଣ ଧର ବୁଲେ । ୧୮ ।
ଇତି ଶ୍ରୀ ରହସ୍ୟ-ମଞ୍ଜରୀ ଦ୍ୱାଦଶ ଛାନ୍ଦେ
ଦ୍ୱାଦଶ ମାସାଦି ଷଡ଼ଋତୁ ବର୍ଣ୍ଣନ
ତ୍ରୟୋଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ବୋଧ
କହିବାକୁ ଆଜ୍ଞା ହେଉ, (ପ୍ରଭୁ) ଏଥିର ପ୍ରବୋଧ । ୧୨ ।

---

# ତ୍ରୟୋଦଶ ଛାନ୍ଦ ।

—:():—

ରାଗ—କଳାମଗୌଡ଼ା [ମୁନିବର ବାଣୀରେ ଗାଇବ] ।

ଏଥୁ ଅନନ୍ତରେ ଶୁଣ, ବହେ ଗିନ୍ନା ପର ଗୁଣ,
ବୁଲନ୍ତ ବନେ ରାଧିକା, ସଙ୍ଗେ ବୃନ୍ଦକା ସେ । ୧ ।
ବୃକ୍ଷକୁ ବୃକ୍ଷ ଦେଖାଇ, ତରୁଗଣମାନ ରାହି,
କୃଷ୍ଣଙ୍କୁ ସୁମର ବାଳୀ, ପଢ଼ନ୍ତ ଛଳ ସେ । ୨ ।
ଏମନ୍ତେ ସକଳ ସଖୀ, ରାଧାଙ୍କୁ ଗୃହେ ନ ଦେଖି,
ଖୋଜନ୍ତ ନିକୁଞ୍ଜେ ପଶି ଭେଟିଲେ ଆସି ସେ । ୩ ।
ସମ୍ଭାଳ ନଥିନ୍ତେ ରାଧା, ମନସିଜ-ଶରେ ବାଧା,
ଗନ୍ଧ ପୁଷ୍କରଣୀ ତଟରେ, ମିଳିଲେ ଧୀରେ ସେ । ୪ ।
ପୁଷ୍କରଣୀ ଚନ୍ଦ୍ରଘାଟ, ମାଣିକ୍ୟ ପାବଚ୍ଛ ଘାଟ,
ମୁକୁତା ମର୍କତ ହେମ, ବଚିତ୍ର ନମ ସେ । ୫ ।
ଜଳ ସୁଧାମସେ ସ୍ୱାଦ, ହଂସ ଚକ୍ରବାକ ଖେଦ,
ତାହୁକ ଡାକନ୍ତ ରଙ୍ଗେ ସୁକାନ୍ତା ସଙ୍ଗେ ସେ । ୬ ।

କମଳ କୈରବ ଶୋଭା,
ମଧ୍ୟେ ମଧୂଳିଟ ଲୋଭା,
କୁସୁମ କେଶରେ ଜଳ
ଅତି ଉଜ୍ଜ୍ୱଳ ସେ । ୭ ।

ବେଢ଼ିଛି ଅଶୋକ ବନ,
ହୃଦସ୍ଥ କରଇ ଛନ୍ନ,
ବୃକ୍ଷକେ ସୁବର୍ଣ୍ଣ ବେଢ
ସୁରନ୍ଧ୍ରେ ଭେଦ ସେ । ୮ ।

ମିଳଲେ ଅଶୋକ ମୂଳେ,
ବ୍ରଜବଧୂ ବୃନ୍ଦ ମେଳେ,
କୁସୁମ ତୋଳଇ ବାଳୀ,
ଗୁନ୍ଥଇ ମାଳ ସେ । ୯ ।

ଅଶୋକ ତରୁ ମଣ୍ଡାଇ
ତଳେ ସିଂହାସନ ଥୋଇ,
କରନ୍ତି ମଦନ ପୂଜା,
ଦେଖି ଗିରଜା ସେ । ୧୦ ।

କାମିନୀ କାମ ଦାୟିନୀ,
କାମାକ୍ଷୀ କାମ ରୂପିଣୀ
କାମର ଜନନୀ ମାତ,
ଆଦ୍ୟ ସମ୍ଭୂତ ସେ । ୧୧ ।

କାମନା ମୋ ସିଦ୍ଧ କର,
କାମ ସମୁଦ୍ରୁଁ ଉଦ୍ଧର,
କାମ-ବୀଜ ଧର ଦେବ ,
ଶିବ ସମ୍ଭବ ସେ । ୧୨ ।

ଏ ରୂପେ କାମନା ସ୍ତବ,
କାମେଣ ବନସ୍ଥ ସ୍ତବ,
ଅଶୋକ ମୂଳରେ ରହି,
ବୃକ୍ଷକୁ କହି ସେ । ୧୩ ।

ଅଶୋକ ଅଷ୍ଟମୀ ଆଜ,
ଅଶୋକ କର ମୋ କାର୍ଯ୍ୟ,
ଅଶୋକ କଳିକା ତୋଳି,
ପିଉଛି ଗୋଳି ସେ । ୧୪ ।

ତୋହ୍ୱେ'ର ନାମ ଅଶୋକ,
ଖଣ୍ଡ ତୁ ମୋହର ଶୋକ,
ଏ କଥା ସବୁ ବଦନରୁ,
ପ୍ରାଣୀମାନଙ୍କୁ ସେ । ୧୫ ।

କାମର ତରୁ ପାଦାନ୍ତ,
କୁସୁମ ଶର ଭରତୀ,
ଧରଣ ବ୍ରହ୍ମାଣ୍ଡ ପୁର,
ଅଛି ଆବୋର ସେ । ୧୬ ।

ପଳାଇ ତ ବାଟ ନାହିଁ,
ଯେତେଣ ଯିବା ଅଛି ତହିଁ
ନାଗଙ୍କି ମାରଣ ବାଣ,
ଯେତେକ ପରାଣ ସେ । ୧୭ ।

---

୮—୨ :—ଗଛକେ (କ, ଖ); ସୁରନ୍ଧ୍ରୁ—(ଗ, ଚ)

୯—୨ :—ଗୁନ୍ଥିଲେ (ଗ); ଗନ୍ଥଇ (ଚ)

ଏଣେ ବୃକ୍ଷେ କୃଷ୍ଣଙ୍କ ରଥ, ପଲ୍ଲବ ପତ୍ର ହଲାଅ
ସମୟେ ମନରେ ପଡ଼ି ଆସ ବାହୁଡ଼ି ସେ । ୧୮ ।
ଏଣେ କୋକିଳମାନେ ଚଳ, ଶ୍ରୀକୃଷ୍ଣ ଛାମୁରେ ମିଳ
କେଉଁଠି ପାଳିଛି ରହି, ଆଣ କଢ଼ାଇ ସେ । ୧୯ ।
ମଧୁକରମାଳା ଯିବ, କୃଷ୍ଣଙ୍କୁ ବେଢ଼ି ଉଡ଼ିବ
କନ୍ଧବ ଶ୍ରବଣ ଲଗି ଆସନ୍ତୁ ବେଗି ସେ । ୨୦ ।
ଅଟଗୋ ଗୋ ଗନ୍ଧପୋଖରୀ, ତୋ ଗନ୍ଧ ଯାଉ ପ୍ରସରି
ଶ୍ରୀକୃଷ୍ଣ ହୃଦରେ ପୂରି ଆଣ ଓଟାରି ସେ । ୨୧ ।
ସବୁରି ହୃଦଆନନ୍ଦ, ଅଟନ୍ତି ପରମାନନ୍ଦ,
କେମନ୍ତେ ବନ୍ଧିଛ ମୂର୍ଚ୍ଛି, ପିଣ୍ଡକୁ ଲେଚ୍ଛୁ ସେ । ୨୨ ।
ଏତେକ ବୋଲି ଲେଉଟି, କ୍ରୋଧେ ଗଦଗଦ ହୁଠି
ମନ୍ଦରେ ପ୍ରବେଶ ହୋଇ, ମୁଖ ଶୁଖାଇ ସେ । ୨୩ ।
ଗମ୍ଭିରୀ ଭିତରେ ପଡ଼ି ଶୋଇଲେ ବଦନ ମାଡ଼ି
କ୍ରୋଧେଧଣ ସକଳ ସଖୀ, ଗଲେ ଉପେକ୍ଷି ସେ । ୨୪ ।
ଏଥୁ ଅନନ୍ତରେ ଆନ ଶୁଣ ବିଚିତ୍ର ବିଧାନ
ଦ୍ୱାରକା ଯୁବତୀ ଯୂଥ ଦେଖନ୍ତି ନୃତ୍ୟ ସେ । ୨୫ ।
ଯେ ଯେତେ ଗାଇଲେ ଗୀତ ବିଚ୍ଛେଦ ବିବିଧମତ
ଚକିତ ସମସ୍ତେ ଶୁଣି, ନ ଆସେ ବାଣୀ ସେ । ୨୬ ।
ସମସ୍ତେ ମନେ ବିସ୍ମର ଏ କଷ୍ଟେ ମାୟାକୁମାରୀ
ଦେବଙ୍କ ଦୁର୍ଲଭ ଅଟ ଏହାଙ୍କ ଗତ ସେ । ୨୭ ।
ସ୍ୱରୂପ ମାଧୁରୀ ଛଟା, ସୃହାଣୀ ଚଢ଼ସ୍ଥା ଅଟା,
ତ୍ରିବଳି ଲଳିତ ଠାଣି, ତ୍ରିଜଗଜ୍ଜଣି ସେ । ୨୮ ।

୨୨—୨:—ପିଣ୍ଡକୁ ଗଚ୍ଛୁ (ଚ); ପିଣ୍ଡକୁ ରଖି (ଗ) । ୨୫—୧:—ବିଚିତ୍ର ସନ୍ଧାନ (ଗ,ଚ) । ୨୬-୨:-ନୁଆସେ ବାଣୀ (କ,ଚ) । ୨୭-୧ ନଚସ୍ରେ (ର) ୨୭—୨:- ଭ୍ରାନ୍ତ (ଲ,ଗ) । ୨୮-୧:-ଚଢ଼ାସ୍ଥା ଚ), ଚଢ଼େସ୍ଥା (କ) ।

ହରିଲେ ସକଳ ମନ,
ଗୁପତେ କାହିଁ ଏ ଥିଲେ
କାଶଲେ ଗାରମା ଜନ
ଗର୍ଜ୍ଜି ଅଇଲେ ସେ । ୨୯ ।

ଶୁଣିଲୁ ନ ଥିଲୁ କର୍ଣ୍ଣେ,
ଏମନ୍ତ ଗୀତ କି ନୃତ୍ୟ,
ଦେଖିଲୁ ନାହିଁ ଲୋଚନେ
ବାଦ୍ୟ ସଙ୍ଗୀତ ସେ । ୩୦ ।

ଆମ୍ଭର ପ୍ରଭୁଙ୍କ କଥା,
ଏ କାହୁଁ ଶିଖି ଅଇଲେ,
ଗୋପର ଯେତେ ବାରତା
ଦେଖି କି ଥିଲେ ଏ । ୩୧ ।

ସୁନ୍ଦରପଣେ ବଳନ୍ତ,
ବଚନେ ନୋହେ ତୁଳଇ,
ବୁଦ୍ଧିରେ ସର୍ବ ଜିଣନ୍ତ
ଓହ୍ଲାଣ ଯାଇ ଏ । ୩୨ ।

ଏ ଦେକ ହୁଅନ୍ତି ଗୋପୀ,
କପଟେ ଅବ ଶ୍ରୀପତି
ଅଇଲେ ମାୟାସରୂପୀ
ଅଣାଇଛନ୍ତି ଏ । ୩୩ ।

ଏହାଙ୍କର ତେଜ ବୃଦ୍ଧି,
କଏ ଏ କାହାର ନାରୀ,
ପଳାଇ ତ ବାଟ ନାହିଁ,
ଜାଣି ନ ପାରି ସେ । ୩୪ ।

ନଷ୍ଟହେ ପରିଲୁ ବୁଦ୍ଧି,
ଆଉ କି ରହିବେ ହରି,
ହରିଙ୍କ ବସିଲୁ ନିଧି
ଦ୍ୱାରକାପୁରୀ ସେ । ୩୫ ।

ଗାୟେଣୀ ଗୀତରୁ ଜାଣି,
ଏତେ ଯେ ରାଧିକା ପ୍ରୀତ,
ଏତେ ଯେ ଗୋପତରୁଣୀ,
ଦିବ୍ୟ ମୂରତି ସେ । ୩୬ ।

ଯାହା କହୁଥିଲେ ହରି,
ମରଣ ଗଳାରେ ବାନ୍ଧି
ଆମ୍ଭେ ତା ପ୍ରତେ ନ କରି
ମଣିଲୁ ନିଧି ଏ । ୩୭ ।

ପତ୍ନୀର ତ ଶଳ୍ୟ ନାହିଁ
ଲୋକର ମୁଖରେ ଲୁଣ,
ରାଧା ଆଉ ଦେବା କାହିଁ,
ହରିଲ ଟାଣ ସେ । ୩୮ ।

କି ଗୁଣେ ରାଜକୁମାରୀ,
ଯେ ଯେତେ କରି ତା ଗୁଣ,
ଧାତା କଲା ନ ବସ୍ତୁର
ନ କରି ଖୁଣ ସେ । ୩୯ ।

---

୨୯—୧ :—ଯାଶଲେ (ଘ) ।

୩୯—୨—ନ କରି ଗୁଣ (ଚ) ।

(ଆମ୍ଭେ ଜାଣୁ ଆମ୍ଭେ ସ୍ୱାମୀ,　　ଗୋପୀ ଶୋକସନ୍ତାପହାରୀ
　ଆମ୍ଭେ ଏ ସୃଷ୍ଟିରେ ସ୍ୱାମୀ,　　ସେ ଆମ୍ଭ ପ୍ରଜା ହେ । ୪୦ ।
ଏମନ୍ତରେ ଦାସୀପଣକୁ　　ଲକ୍ଷିଲେ ନୋହିଲୁ ତାଙ୍କୁ
　ଏତେକ ବଚନ ବାଣୀ,　　ହରି ସ୍ମରଣ ହେ । ୪୧ ।)
(ଏବେ ପ୍ରଭୁ ରକ୍ଷା କର,　　ମନରୁ କୋପ ସମ୍ବର
　ବହୁତ ଅପରାଧ କଲୁ,　　ଜାଣି ନ ଥିଲୁ ହେ । ୪୨ ।
ଗରବଗଞ୍ଜନବାନା　　ଶରଣରକ୍ଷଣହେଲା
　ସର୍ବଦା ଆମ୍ଭେ ଶରଣ,　　କର କାରଣ ହେ । ୪୩ ।)
ବାଣ୍ଛାକଳ୍ପ ମାୟା ହରି,　　କେ ତନ୍ତ୍ର ଭରିବ ପାରି
　କରୁଣା ଯାହାକୁ କର,　　ସେ ହୋଇ ପାର ହେ । ୪୪ ।
ଏବେ ହେ ଆମ୍ଭଙ୍କୁ ନାଥ,　　ତାହାଙ୍କୁ ସମର୍ପି ଦିଅ
　ତାହାଙ୍କ ଶ୍ରୀମୁଖ ଦେଖି,　　ହୋଇବୁ ସୁଖୀ ହେ । ୪୫ ।

ଅନ୍ତର୍ଗତ ଭାବ ଜାଣି　　ପ୍ରସନ୍ନ ସାରଙ୍ଗପାଣି
　ଗୋପୀମାନେ ବୋଇଲେ ଆଗ,　　କି ଧନ ମାଗ ହେ । ୪୬ ।
ଗୋପୀଏ କହିଲେ ଆନ,　　କିଛି ମାଗୁ ନାହୁଁ ଧନ
　ଆମ୍ଭର ପିଅର ଦେବ,　　ନାହିଁ ନୋହିବ ହେ । ୪୭ ।
ତୁମ୍ଭର ପରାଏ ସେହୁ　　ନାମ ତାଙ୍କ ଭାବଗ୍ରାହୀ
　ନନ୍ଦ ତୁମ୍ଭେ ସେହୁ ହୁଅ　　ହୋଇଲେ ଯାଅ ହେ । ୪୮ ।

ଏତେ କହି ଅନ୍ତର୍ଦ୍ଧାନ　　ଅଦୃଶ୍ୟ ସବେ ଗଗନ
　ପ୍ରବେଶ ଯେ ଯାହା ଅଙ୍ଗ,　　ସେ ସହି ସଙ୍ଗ ହେ । ୪୯ ।
ଗୋପୀଙ୍କ ମୁଖୁଁ ଶୁଣି　　ହସନ୍ତି ସାରଙ୍ଗପାଣି,
　ନୟନୁ ବହଇ ନୀର　　ମନ ଅଥିର ହେ । ୫୦ ।

---

୪୧—୧:—ଲେଖିଲେ (ଖ, ଗ). ୪୬—୨— କହିବର　(କ,ଖ,ଗ)
୪୮—୨:—ନନ୍ଦ ଯେ ତୁମ୍ଭେହେଁ ହୁଅ (ଚ) ।

ସ୍ତବ କରକର ହୋଇ, ରୁକ୍ମଣୀଙ୍କ ମୁଖ ଦୃଷ୍ଟି
ବୋଲନ୍ତି ଆଜ ଯେ ଧନ୍ୟ ସୁଫଳ ହେଲ ସେ । ୫୧ ।
ତୁମ୍ଭ ଆମ୍ଭ ମନ ଜାଣି, ଦସ୍ତ' କଲେ ଠାକୁରାଣୀ
ଗାସ୍ୱେଣୀମାନଙ୍କ ସ୍ତବ, କଲ୍ କ ଠାବ ସେ । ୫୨ ।
ଏବେ ତୁମ୍ଭେ ଚଳଯାଅ, ଯେ ଯାହା ବଧାନେ ରହ
ହନର ସମସ୍ତ ଜାଣି, କହୁବା ପୁଣି ସେ । ୫୩ ।
ଏହା ଶୁଣି ସବ' ରାଣୀ, ନୟନୁ ନ ରହେ ପାଣି,
ମସ୍ତକ ପୋତ ଯୁବତୀ, ଉତ୍ତର ଛନ୍ତି ସେ । ୫୪ ।
ହୃଦୟେ ଶୋକ ସମ୍ଭାଳ, ଆରମ୍ଭେ ରନ୍ଧଣ ଢାଲି
ମେଲଣି ପାଇଣ ଗଲେ, ଗୃହେ ମିଳଲେ ସେ । ୫୫ ।
ଲଜ୍ଜାଯେ ଗଳତ ହୋଇ, ଚନ୍ଦ୍ରାସ୍ୱେ ଦୁବଳ ଦେଖି
ଭୋଜନ ଶୟନ ବଡ, ନାହିଁ ସମ୍ଭାଷ ସେ । ୫୬ ।
ବଲେ ସଖୀମାନେ ଧର, ଭୋଜନ ବେପନ କର
ଭୁଝାଇ କହନ୍ତି କଥା, ଛଡ଼ାଇ ବ୍ୟଥା ସେ । ୫୭ ।
ଏମନ୍ତେ ଶ୍ରୀ ଜଗନ୍ନାଥ ମର୍ଦ୍ଦନ ମାଜଣା ଗାତ୍ର
ସ୍ନାହାନ ଭୋଜନ ବିଧି, ତାମ୍ବୂଲ ପିଣ୍ଡି ସେ । ୫୮ ।
ପଲଙ୍କ ପଟର ପହୁଡ଼ି, ରାଧା ଗୁଣ ମନେ ପଡ଼ି
ଉନ୍ନିଦ୍ରେ ପାହଲ ରାତ, ଉଠି ବସନ୍ତି ସେ । ୫୯ ।
ଦେବ କହଲେ ଏହୁ ମତ ରାଧାଙ୍କ ସରୂପ ଚନ୍ତ୍ର
କହିଲେ ଥୋକାଏ ହନ, ଶ୍ରୀ ଭଗବାନ ସେ । ୬୦ ।

ଇତ ଶ୍ରୀ ରହସ୍ୟମଞ୍ଜରୀ ତ୍ରୟୋଦଶ ଛନ୍ଦେ,
ରାଧା ବନେ ଗନ୍ଧଗଳାମର୍ଦ୍ଦନ ବନ୍ଧେ
ଚତୁର୍ଦ୍ଦଶ ଛନ୍ଦ ବର୍ଣ୍ଣନେ କେବଣ କେବଣ ସ୍ତବ
କହବ'କୁ ଆଜ୍ଞା ହେଉ ଶ୍ରୀ ପଦ୍ମନାଭ । ୧୩ ।

---

୫୮—୨:– ତାମ୍ବଲ (ପ) ।

—*—

# ଚତୁର୍ଦ୍ଦଶ ଛାନ୍ଦ ।

ରାଗ—ପଟହମଞ୍ଜରୀ (ଖ୍ରୀଷ୍ଟନ ବାଣୀରେ ଗାଇବ)

୧ ଏଥୁଁ ଅପୂରୁବ ରାତ, ଚଇତ ପୂର୍ଣ୍ଣିମା ରାତ,
ସୁମରଲେ ଶ୍ରୀୟାପତ ନିଜ ବାହନ ।
ଧ୍ୟାନେ ଥିଲା ଖଗେଶ୍ୱର, ତକ୍ଷଣେ ଉଠିଲା ଧୀର,
ଉଡ଼ିଲା ତେଜ ପ୍ରଖର, ଯାର୍ଦ୍ଧ ଗଗନ । ୧ ।

ଆସନ୍ତେ ପକ୍ଷୀ ପବନ, ପ୍ରଳୟ ମେଘୁ ଗର୍ଜ୍ଜନ,
ଜଳଧି ଜଳ ତର୍ଜ୍ଜନେ ଗଗନେ ଉଠି ।
ଆସି ଖ ସ୍ୱରୂପ ଧରି, ପ୍ରଭୁଙ୍କ ଦର୍ଶନ କରି
ସନ୍ତୋଷ ହୋଇ ମୁରାରି ଆରୋହେ ପିଠି । ୨ ।

ବୋଲନ୍ତି ଲୋ ଦାସି ଯାଅ, ସତ୍ୱରନ୍ତ ବେଶ କରାଅ
ବାହନ ଚଳାଇ ଆସ ରାଧା ଦର୍ଶନେ ।
ଆଜ୍ଞା ପାଇ ଦାସୀ ଗଲେ ସର୍ବ ଅଙ୍ଗ ସାମଲନ୍ତେ
କର୍ପୂର କସ୍ତୁରୀ ଗୁଲେ ଗନ୍ଧ ଚନ୍ଦନେ । ୩ ।

ରତନ ବସନ ଶୋଭା ଅପରୂପେ ଆସ ଲୋଭା
କାମ ରତ୍ନବର କି ସେ ସମରେ ସାଜେ ।
କି ଏ ନବ କଳ୍ପତରୁ ଅଷ୍ଟରତ୍ନ ଫଳ ଗରୁ
ଚନ୍ଦ୍ରହୁଁ ଅଧିକ ଗୁରୁ ମୁଖ ବିରାଜେ । ୪ ।

ବଜନ୍ତେ ମହାମଣ୍ଡଳୀ ରୁକ୍ମଣୀ ରମଣୀମଣି
ଯୂଥ ଯୂଥ ଠାକୁରାଣୀ ସଙ୍ଗେ ବଜନ୍ତେ,
ଦିବ୍ୟ ବେଶ ସର୍ବରାଣୀ ଯାର ଯେତେ ପରିଜନୀ
ସେବାଯୁଧ କରେ ଘେନି ସବେ ଚଳନ୍ତେ । ୫ ।

ସକଳ ନୂପୁର ନାଦ, କଙ୍କଣ ମୁଦ୍ରିକା ବାଦ୍ୟ
ରୁଣୁଝୁଣିତ ଶବଦ ଘୋର ଚହଲ,
ପ୍ରଭୁଙ୍କ ପାଖୁଁ ତେ ଆସି ଦର୍ଶନ କଲେ ସୁକେଶୀ
ପେଲି ତ ନୁହଇ ପଶି ଅତି ଗହଳ । ୬ ।
ଶ୍ରୀହରି ବୋଲନ୍ତି ଆପ ଗରୁଡ଼ ପୃଷ୍ଠରେ ବସ
ଅପରୂପ ଆକର ରୂପ ଯାଗ ପୂରତ,
ଶୁଣ ତୁ ଆହେ ଗରୁଡ଼, ଆମ୍ଭଙ୍କ ଟେଘନଣ ହୁଡ଼
ଶ୍ରୀବୃନ୍ଦାବନରେ ରୂଢ଼ ଆଜ ଭରତ । ୭ ।
ଶୁଣିଣ କଶ୍ୟପସୁତ, ମନରେ ହୋଇ ହରଷିତ
ସିଠି ବସ୍ତ୍ରାଞ୍ଚଳ ହାତ— ସସ୍ତ୍ର ଯୋଜନ,
ଶ୍ରୀକୃଷ୍ଣ ସହିତେ ତହିଁ ବସିଲେ ସମସ୍ତେ ଯାଇଁ
ସୁପାଢ ଶେଯ ପଡ଼ାଇ ଯାର ଯେସନ । ୮ ।
ଉଡ଼ିଲା ଗରୁଡ଼ ଯତି, ଅଦୃଶ୍ୟ ଗଗନଗତ
ମିଳିଣ କଦମ୍ବ କତି ଲେଉଟି ପୁଚ୍ଛି,
ଏବେ କହ ଆଜ୍ଞା ପ୍ରଭୁ ବୁଝାଇ କହିବା ସବୁ,
ଶ୍ରୀକୃଷ୍ଣ ବୋଇଲେ ବାରୁ ଶୁଣ କହୁଛି । ୯ ।
ଏବେ ତୁ ତଳକୁ ପଡ଼ି ସଧୀରେ ସଧୀରେ ହୁଡ଼ି
କଦମ୍ବ ଗଛରେ ଚଢ଼ି ପକ୍ଷ ପ୍ରସାର,
ବନ ଉପବନେ ଯେତେ ମଥୁରା ଗୋପ ସହିତେ
ଢାଙ୍କିବୁ ଗଗନମଣ୍ଡଳ ଅତି ବିସ୍ତାର । ୧୦ ।
ଆକାଶ ପ୍ରାପ୍ତ ପର୍ଯ୍ୟନ୍ତ ପାଇବେ ଜନ ସମସ୍ତେ
ନ ଦେଖିବେ କେହୁ ତୋତ ଉପ୍ସର୍ଗେ ରହ
ପୃଷ୍ଠରେ ଯୁବତୀ ସର୍ବେ ଅଦୃଶ୍ୟ ମତେ ରହିବେ,
ବୁଲି ବୁଲି ଦେଖୁଥିବେ, ନଷ୍ଟଲେ ବହ । ୧୧ ।

---

୬—୩ː—ରଣରେଣନ୍ତ (କ); ରଣଲୁଣିତ (ଗ); ରୁଣଝୁଣିତ (ଘ);

ନବଡ଼ ପିଠ ହୋଇବ,
ସେ ଯନ୍ତ୍ର ଥାଇଁ ବୁଡ଼ିବ
ପଛେ ଠାକୁର ଦଣ୍ଡ ଥିବ
ଭଙ୍ଗିବ ସବୁ ।
ଯଉଁଠାରେ ଯେତେ ଲୀଳା
ଦେଖିବେ ସବ ଅବଳା
ବନ ଉପବନ ଖେଳା
ଯେମନ୍ତେ ବାଲୁ । ୧୨ ।
ଏତେ ବୋଲି ହୃଷୀକେଶୀ
କଳ୍ପତରୁ ମୂଳେ ଆସି
ଗରୁଡ଼ ପୃଷ୍ଠରୁ ଖସି
ଜଣ୍ଟଲେ ରଙ୍ଗ ।
ସୁମରଲେ ସ୍ତୋକ କୃଷ୍ଣ
ମିଳିଲ ଆସି ବହନ
ଜାଣିଲ ପ୍ରଭୁଙ୍କ ମନ
ଉଚ୍ଛନ୍ନ ହୋଇ । ୧୩ ।
ତା ହାତେ ମୋହନବଂଶୀ
ଯାଇଥିଲେ ହୃଷୀକେଶୀ
ଗୁପତେ ଥୋଇ ବଣ୍ଣାଶୀ
ଦେଲ ସେ ଆଣି;
କୋଧେ ଗଦଗଦ ହୋଇ
କହୁଲେ ତାଙ୍କୁ ମଣାଇ
ସକଳ ଦୁଃଖ ଜଣାଇ
ନମ୍ରସ୍ୱ। ବାଣୀ ।
ଶୁଣ ମୋ ପ୍ରାଣ'ସଙ୍ଗାତ
ନିରନ୍ତରରେ ମୋର ଚିତ୍ତ
ତୁମ୍ଭେ ମୋର ପଞ୍ଚଭୂତ
ତୁମ୍ଭର ଠାଇଁ,
ଏବେ ତୁମ୍ଭେ ଚଳାଯାଅ
ଦାମ ସୁଦାମଙ୍କୁ କହ
ଅଲକ୍ଷିତ ମୁ ଛ ଥାଅ
ସଙ୍ଗ ତୁଟାଇ । ୧୪ ।
ବିଶାଳ ବୃଷଭ ଡାକ
ଦେବପ୍ରସ୍ଥ ବରୁଥିକ
ବୋଧି କହ ରୁକ୍ମିଣୀକ
କହିବୁ ଯାଇ,
ବସୁଦାମ ସୁଦାମଙ୍କୁ
ଅର୍ଜୁନ ଧୃବଲସ୍ୱଙ୍କୁ
କୁମୁଦ ଜୟନ୍ତକଙ୍କୁ
କହ ତୁ ଯାଇ । ୧୫ ।
ଲବଙ୍ଗ ଲଳିତା ଆଗେ
ଖେଳନ୍ତି ସରବ ଲଗେ
କହିବୁ ମୋହୋ ସରାଗେ
ଥିବ ବଗ୍ରୁର ।
ତୁମ୍ଭେ ଷୋଳସ୍ତ୍ର ସଙ୍ଗୀ
ତାହାଙ୍କୁ କହିବୁ ବେଗି
ମୋର ହୃଦୟ ଅନ୍ତରଙ୍ଗୀ
ଗୁପତ କଣ । ୧୬ ।

---

୧୩—୧:—ତୃଷିକେଶୀ—(କ,ଖ,ଚ) । ୧୪—୬:—ଉଚ୍ଛୁଆଅ, (ଖ,ଘ,ଛ) ।
୧୪ ୮:—ସବମଣାଇ (କ, ଗ) ।

ଆମ୍ଭ ପିତା ମାତା ସେବା ତୁମ୍ଭଙ୍କୁ ଜଗତ ବାବା
ସମସ୍ତେ ସମ୍ଭାଳି ଥିବା ମୋ ବୋଲ ମାନି,
ଦନୁଜ ବଳ ସଂହାରି ଧରଣୀର ଭାର ହରି
ଫିରିବି ମୁଁ ନିତ୍ୟପୁରୀ ତୁମ୍ଭଙ୍କୁ ପେନି । ୧୮ ।
ବୋଧ ପାଇ ସ୍ତୋକକୃଷ୍ଣ ପ୍ରଣାମ କରି ବନ୍ଦନ
ଆନନ୍ଦେ ନିଜ ସଦନ ଚଳିଲେ ଯାଇ,
ଏଥି ଅନନ୍ତରେ ହରି ସତ୍ରକୁ ସାଇ ଉଆର
ଶିବ ଯୁଗ ପଦ ସ୍ମରି ପାଇବୁ ନାହିଁ । ୧୯ ।
ନିଦ୍ରାବତୀକ ରାଇଣ ଆଜ୍ଞା ଦେଲେ ନାରାୟଣ
ତୁ ଗୋ ନିଦ୍ରା ସ୍ୱରୂପିଣୀ ମୋହିବୁ ସବୁ,
ଗରୁଡ଼ ପୃଷ୍ଠରେ ଯେତେ ବ୍ରଜବଧୂ ମନ୍ଦା ମୋତେ
ପାହୁବା ପର୍ଯ୍ୟନ୍ତେ ଏତେ ଗ୍ରୁଡ଼ଣ ଥିବୁ । ୨୦ ।
ଆଗୋ ତୁ ଉପନାବତୀ ସପନ ପାତ୍ରନା ପାଇ
ବଖାଇ ତୁ ନେବୁ ସାଥ ଜନମାନଙ୍କୁ
ଏତେକ ତାହାଙ୍କୁ କହୁ ଗଗନେ ଚନ୍ଦ୍ରକୁ ଚାହିଁ
ଆନନ୍ଦେ ଉତ୍ସୁକ ହୋଇ ବୋଲନ୍ତି ତାକୁ । ୨୧ ।
ଶୁଣ ତୁ ଶଶଲାଞ୍ଛନ ଧରଣ ଜଡ଼ କାରଣ
ନିର୍ମଳ ତାରକାଗଣ ମଧ୍ୟେ ବିରାଜ,
କାଳିନ୍ଦୀ କଦମ୍ବ ବୃହିଁ ଯାହାକୁ ଯେମନ୍ତ କହୁ
କଦମ୍ବ ମୂଳରେ ରହୁ ହୋଇଲେ ସଜ । ୨୨ ।
କୁଚର ଅର୍ଦ୍ଧ ଯୁଗଳ ସଦାପୁଷ୍ପ ଶ୍ରେଣୀ ତଳ
ମଞ୍ଜୀର ମଣି ମଞ୍ଜୁଳ ପଦେ ଦୋଳନ୍ତି,
କଣ୍ଠୁ କଙ୍କିଣୀ କଟି ଶୃଙ୍ଖଳା ପ୍ରଖର ଘଣ୍ଟି
କୁଞ୍ଚିତ ପ୍ରକଟ ଧଟୀ ପୀତପଟମା । ୨୩ ।

---

୧୮—୭ :—ନିଜପୁରୀ (ଗ, ଘ, ଛ) । ୧୯—୨ :—ପ୍ରଲମ୍ବକରି (କ, ଖ)
୨୩—୭:—ଶୃଙ୍ଖଳା ଙ୍ଘୁର ଘଣ୍ଟି (ଚ); ମେଖଳା ଘର୍ଘର ଘଣ୍ଟି (ଘ, ଛ)

ଶ୍ରୀଅଙ୍ଗେ ଚର୍ଚ୍ଚିତ ଘୁସୃଣ
ସୁଗନ୍ଧ ଆମୋଦ
କଣ୍ଠେ କଉସ୍ତୁଭ ମଣି
ଶ୍ରବଣେ କୁଣ୍ଡଳମଣି

କସ୍ତୁରୀ କର୍ପୂର ଘୃଣୁ
କରୁ ଆନନ୍ଦ ବନ,
ମକର କରଣ ଜିଣି
ଛନ୍ତି ତପନ । ୧୪ ।

ନିରୁପାମ ନାସାପୁଟ
ସୁରଙ୍ଗ ଅଧର ତଟ
ଲୋଚନ ଅନଙ୍ଗ ଧନୁ
ଅଳକାବଳି ଯେସନ

ସିନ୍ଦୁ ଫଳ ଝଟଝଟ
ଫରେ ବସନେ
ତରଙ୍ଗେ ତରଳେ ତନୁ
ଭୃଙ୍ଗ ପଙ୍କଜେ । ୧୫ ।

କପାଳେ ଚନ୍ଦନ ବିନ୍ଦୁ
ପଙ୍କୋଟେ କୁମୁଦ ବନ୍ଧୁ
ମଉଳ-ମଣ୍ଡିତ-ଚୂଳ,
ଶିଖୀ ଶିଖଣ୍ଡ ଚଞ୍ଚଳ

ନନ୍ଦିତ ଶରଦ ଇନ୍ଦୁ
ବଳିତ ଭାବେ,
ମାଳତୀ ବେଢ଼ି ଉଜ୍ଜ୍ୱଳ
ମଳୟ ବାଏ । ୧୬ ।

ଅଙ୍ଗଦ କଙ୍କଣ କରେ
ସଧୀରେ ମଧୁରେ ସ୍ୱରେ
ନବୀନ କିଶୋର ଅଙ୍ଗ
ଦେବ ଚନ୍ଦ୍ରେ ଉରଭଙ୍ଗ

ମୋହନ-ମୁରଲୀ ଧରେ
ଅଧର ତଳେ,
ଅନଙ୍ଗ ତରଙ୍ଗ ରଙ୍ଗ
କଦମ୍ବ ମୂଳେ । ୧୭ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଦ୍ଦଶଚ୍ଛନ୍ଦେ,
ପ୍ରିୟ ପ୍ରିୟା ସଦନପ୍ରବେଶ ବନ୍ଧେ,
ପଞ୍ଚଦଶ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଉତ୍ତର,
କହିବାକୁ ଆଜ୍ଞା ହୋଇ ଶ୍ରୀ ନନ୍ଦକିଶୋର । ୧୪ ।

---

୧୬—୪:—ବନ୍ଦିତ ଭାଏ (ପ, ଛ) ବନ୍ଧିତ ଭାଏ (ଚ) ।

# ପଞ୍ଚଦଶ ଛାନ୍ଦ

—o—

ରାଗ—କଲ୍ୟାଣ ଆହାରୀ ।

ନବ କିଶୋର          କିଶୋରୀ ପ୍ରାଣନାଥ
ବିମ୍ବାଧରେ ବଂଶୀ ରୁପିଲେ,
ତ୍ରିଭଙ୍ଗ ଛନ୍ଦେ          କଦମ୍ବମୂଳେ ରହି
ମଧୁର ଧ୍ୱନି ଆଳପିଲେ,
ସୁସ୍ୱର,
ଧ୍ୱନି ଶୁଭିଲା ଉଦପୁର,
ସଚରାଚର          ଜନ ମନ ହରିଲା
ସମାଧି ଟଳିଲା ଶିବର । ୧ ।

ସପତ ସାଗର          ଲହରୀ ଥକିତ
ଯମୁନା ଉଜାଣି ବହିଲା
ଶୁଷ୍କ ତରୁବର          ନବ ପଲ୍ଲବିତ,
ପାଷାଣ ତରଳି ଗଳିଲା
ଗଗନେ—
ଉଡ଼ନ୍ତା ଚଢ଼ାଇ ଥକିଲେ,
ଗଭୀର ଜଳୁଁ          ମତ୍ସ୍ୟମାନେ ଉଲ୍ଲାସେ
ତେଜି ଯାଇଁ କୂଳେ ପଡ଼ିଲେ । ୨ ।

ପଶୁ ଜନ୍ତୁମାନେ          ମୁଖେ ଗ୍ରାସ ଯେନି
ଆକାଶକୁ ଦୃଷ୍ଟି ରହିଲେ,
ବେଦବର ବେଦ          ପଢ଼ୁଁ ପାଶୋରିଲେ
ଧ୍ୱନି ଶୁଣି ମୋହ ହୋଇଲେ,
ସୁସ୍ୱର,
ପାହିଗଲା ରାଗ ଗାନ୍ଧାର
ନବ କିଶୋରୀ          ଚନ୍ଦ୍ରା ମେଳୁ ଉଡ଼ିଲା
ଛାଡ଼ିଲା ମଦନ ଅନ୍ଧାର । ୩ ।

କାଚପୁରେ ରହି—                    ପଲଙ୍କେ ସୁନ୍ଦରୀ
ଅଳପ ନିଦ୍ରା ଯାଇଥିଲା ।
ବଂଶୀ-ଆଳାପ—                    ଧ୍ୱନି କର୍ଣ୍ଣେ ଶୁଣନ୍ତେ
ସପନ ମଣି ଚମକିଲା,
ସୁନ୍ଦରୀ—
ହଲ୍‌ଟି ପଡ଼ିଲା ତଳରେ,
ନାବୁଁ କି ମୀନ                    ଛିଟିକି ତେଳିଁ ଆସି
ପଡ଼ିଗଲା ନଦୀ ଜଳରେ । ୪ ।
ଭେଦିଲା ଧ୍ୱନି                    ହୃଦସ୍ଥ ଜର ଜର
ଉଚ୍ଚସ୍ୱରେ କାନ୍ଦ ଉଠିଲେ,
ବେଭଳ ମଠ                    ଆରତ ହୃତଗ୍ୟାନେ
ବିକଳେ ନେତି ସାଉଁଟିଲେ,
ସୁନ୍ଦରୀ,
ବିସ୍ମୟ ରହି କ୍ଷଣେ ଶୁଣି,
ଏ ତ ବିପରୀତ                    କାହାର ଚରିତ
କୃଷ୍ଣ ଗଲା ଦିନୁ ନ ଜାଣି । ୫ ।
ବ୍ରଜ ଭୂମିରେ                    ଏଥେ ଯେତେ ଅଛନ୍ତି
କାହାର ବଂଶୀ ଏ ନୋହଇ,
ଏଥର କୋଟି ଅଂଶ                    ଲେଶ ମାତ୍ରକୁ
ଲକ୍ଷିଲେ ସମ ଅଛି କାହିଁ,
ଏ ଧ୍ୱନି,
ଏ ମନ୍ଦା ମଧୁ ଯାମିନୀରେ,
କାହାପାଇଁ ଅବା                    କେହୁ ବଜାଇବ
ଯମୁନା ପୁଲିନ ବନରେ । ୬ ।
ଏତେବେଳେ ଆସି                    ଫସିଙ୍କ ହୋଇଲା
ଯାହା କହୁଥିଲେ ଅମ୍ବିକା,

ଏମନ୍ତ ବସ୍ତୁରୁ ବଂଶୀ ଡାକ ଦେଲା
ରାଧିକା, ରାଧିକା, ରାଧିକା,
ସୁନ୍ଦରୀ—
ଶୁଣି କରି କୋଡ଼ି ହୋଇଲା,
କେଶ ବାସ ଅସ— ମ୍ଳାନ ହୋଇ ବାଳୀ
କଦମ୍ବ ମୂଳକୁ ଧାଇଁଲା । ୭ ।
ଦେଖିଲେ ଦବ୍ୟ— ମୂରତି ଗୋପୀନାଥ
ଚାହିଁ ମଥା ପୋତ ରହିଲେ,
କିଶୋରବର ବଂଶୀ କରୁଁ ପକାଇ
ଧାଇଁ ପଡ଼ି ଭିଡ଼ି ଧଇଲେ,
ସୁନ୍ଦରୀ—
କ୍ରୋଧେ ଗଦ ଗଦ ବଦନ୍ତି,
କେ ତୁମ୍ଭେ କାହାକୁ ବୋଲେ ଧରୁଅଛ
ମୁହିଁ ଅନାଥିନୀ ଯୁବତୀ । ୮ ।
ଏହି ମତ ପରି— ପୂରୁଷ ଜଣେକ
ଗୋପ ନଗରେ ରହିଥିଲା,
ଏହି ବନେ ପଶି ବଂଶୀ ବଜାଇ ସେ
ସବୁନ୍ତ ନାଶ କରିଗଲା,
ଏବେହେଁ—
ତୁମ୍ଭେ ଆସିଅଛ କାହିଁକି,
ତୁମ୍ଭେ ପୁଣି ନାଶ କରିବ କାହାକୁ
ପଶୁର ଅଇଲୁ ତହିଁକି । ୯ ।
ଛାଡ଼ ଛାଡ଼ ବୋଲି କ୍ରୋଧେ ଅସମ୍ଭାଳେ
ବୋବାଇ ଉଠିଲେ ସୁନ୍ଦରୀ,
ଦେଖି ଶ୍ରୀହରି ଲୋତକ ନ ରହଇ
ହୃଦେ ଭିଡ଼ିଲେ ଗାଢ଼ କରି,

ମୁରଣ—
ମୁଖ ଚମ୍ଭି ଶୋକ ହରଲେ,
ଗଳାରେ ଲମ୍ବାଇ ଚକ୍ଷୁର କୁରୁଳ
କବଗ୍ଧି ବାନ୍ଧ ଯାମଲଲେ । ୧୦ ।
ଅଞ୍ଚଲେ ମୁଖ ପୋଛୁ ଦେଇ ବୋଲନ୍ତ
ଶୁଣିମା ମୋର ପ୍ରାଣେଶ୍ୱର,
ମୋର ମନ କଥା ତୁମ୍ଭେ କ ନ ଜାଣ
କେତେ କହିବା ଫେଡ଼ କର,
ସୁନ୍ଦର !
ଦେଖ ମୋ ଦେହ ରୂପ କାନ୍ତି,
ଝୁରି ଝୁରି ତନୁ ଝଡ଼ି ଯାଉଅଛୁ
କେବଳ ରହୁଛୁ ଜୀବନ୍ତ । ୧୧ ।
ରାଧିକା ବୋଇଲେ ନାଗରମାନଙ୍କ
ସାଗର ସାଗର ଏ ବୁଦ୍ଧି,
ମାମୁ ମାର ଦୋଷ ମେଣ୍ଟାଇ ପାରନ୍ତ
ମାଉଁଙ୍କ ଗଳା ଧରି କାନ୍ଦ,
ନାଗର,
ସେହ ମାସ୍ତାଧର ନୁହ କ,
କୋଟି ବ୍ରଜଜେମା ଯାହାଙ୍କୁ ଖଟନ୍ତ
ସେ ପୁଣି ଝୁରେ କମଳୀକ । ୧୨ ।
ଶ୍ରୀକୃଷ୍ଣ ବୋଲନ୍ତ ଚନ୍ଦ୍ର ଦେବତାର
କୋଟି କୋଟି କନ୍ୟା ଅଛନ୍ତି,
ଯାମନୀ କନ୍ୟା ତା କ୍ଷଣେହେଁ ନ ଥିଲେ
ଛୁଡ଼ଇ ତାର ଜ୍ୟୋତ କାନ୍ତ ?
ସୁନ୍ଦର !
ଶତ ବନୁ ଇନ୍ଦ୍ର ନୁହଇ,

ରାଧାକୃଷ୍ଣ ବୋଲି ଯୁଗ ଯୁଗାନ୍ତରେ
ଶାହ୍ମାସ ପୁରାଣେ ଲହରି । ୧୩ ।
ରାଧା ବୋଇଲେ, ରାଧାକୃଷ୍ଣ ବୋଲାଇ
ଦୁସରନ୍ତା ହୋଇ କ ରହିବ,
ରାଡ ରାଡ ହୋଇ ଲୁଚ ଆସିଅଛ
ରାତ୍ର ନ ପାହୁଁ ପଳାଇବ,
ନାଗର,
ଏଥୁଁ ମରଣ ମଣି ଭଲ,
କ୍ଷଣକର ସୁଖ ସପନ-ସମ୍ପତ୍ତି
ପୁଣି ହିଁ ସେହି କଲବଲ । ୧୪ ।
ଶ୍ରୀହରି ବୋଇଲେ ଏହି ନଣି ସଖି
ଅନେକ ଯୁଗଯାଏ ଥିବ,
ବହୁତ ହାସ ବିଳାସ ରାସ ରସ
ଏହି ବୃନ୍ଦାବନେ ହୋଇବ,
ସୁନ୍ଦରି,
ମନେ କିଛି ଚିନ୍ତା ନ କର,
ଭ୍ରମର ପାଇଁ ନାନା ପାଞ୍ଚ କରନ୍ତୁ
ଏଥକୁ ହୁଅ ତତପର । ୧୫ ।
ଶୁଣି ସୁନ୍ଦରୀ ହୃଦୟ ଉଲ୍ଲସିତ
ଯୌବନୁଁ ବସନ ଖସିଲା ।
ମୁଖେ ମୁଖ ଚୁମ୍ବି ଭୁଜେ ଭିଡ଼ି ବାଳୀ
ଲମ୍ଫି ପଡ଼ି ତଳେ ବସିଲା,
ଗରୁଡ଼,
ଦେଖି ମୁଖ କଲା ପିଠିକି,
ପୃଷ୍ଠପରେ କୃଷ୍ଣ— ରାଣୀ ରହୁଁ ଥିଲେ
ପକ୍ଷୀ ଉହାଡ଼ିଲା ଦୃଷ୍ଟିକି । ୧୬ ।

ରାଧାକୃଷ୍ଣ ପ୍ରୀତ ସୁରତ ପ୍ରବନ୍ଧ
ଚୁମ୍ବନ ଆଲିଙ୍ଗନ ଖେଳା,
କାମ ସମୁଦ୍ରେ ବେନି ଜନ ବୁଡ଼ିଲେ
କ୍ଷପିଣ ଗଲା ଗ୍ୟାନ-ଭେଳା,
ସୁଜନେ,
ଚେତନା ବଳେ ପଶଂ ଶଲେ,
ଜଳ ପ୍ରବଳେ ଉତ୍ତ୍ରି ନ ପାରନ୍ତ
ଯୋଗେ ଭେଲା ପାଇ ତଣ୍ଟଲେ । ୧୭ ।

ସୁରତ ଅନ୍ତେ ସନ୍ତୋଷ ବେନି ଜନ
କାମ ମନୋରଥ ପୂରଲା,
କେଶ ବସନ ବାସ ସଉଧାସନ
ମନମଥ ଅପସରଲା,
ସୁଜନେ,
ରାଧାକୃଷ୍ଣ ପଦ୍ମଚରଣ,
କରେଛି ଦେବ କରନ୍ତରେ ଆରତ
ଫକୀର ମାଗଇ ଶରଣ । ୧୮ ।

ଇତ ଶ୍ରୀ ରହସ୍ୟମଞ୍ଜରୀ ପଞ୍ଚଦଶ ଛାନ୍ଦେ,
ରାଧିକାରମଣ ସୁଖ ପ୍ରସନ୍ନ ବନ୍ଧେ,
ଷଷ୍ଠଦଶ ଛାନ୍ଦ ବର୍ଣ୍ଣିନେ କେବଣ କେବଣ ଛନ୍ଦାଟ
କହିବାକୁ ଆଜ୍ଞା ହୋଉ ଶ୍ରୀ ନନ୍ଦନ୍ଦଟ । ୧୯ ।



---

୧୮—୪ :—ମନୁମଥ, (କ, ଖ, ଚ) ।

# ଷଷ୍ଠଦଶ ଛାନ୍ଦ ।

**୧**୧**

ରାଗ—ଆନନ୍ଦ ଭୈରବ (ଷୋଡ଼ଶ ଗୋପାଳ ଯୁଗେଣ ଶ୍ରୀସ୍ଵରେ)

ଶ୍ରୀ ଗୋପୀକାନ୍ତ, ଗୋପୀଙ୍କ ଧନ
ଗୋପୀ ନାମ ଧରି ଦେଲେ ବଇଁଶୀ ସ୍ଵନ । ୧ ।

ଆସ ଗୋ ବୃନ୍ଦ, ଏ ମୋର କନ୍ଦ,
ରତନ କନକ ଗନ୍ଧ ଚନ୍ଦନ ଘେନ୍ଦ । ୨ ।

ଆସ କମଳା, ଗୋ କଣବା ଖେଳା,
ଗୃହର ମଣ୍ଡଳୀ ମୁଖ୍ୟ ନବ ଅବଳା । ୩ ।

ଆସ ମାଧବୀ, ଗୋ ସୁଖ ସାଧବୀ,
ଗୃହର ମଣ୍ଡଳୀ ମୁଖ୍ୟ ଯେତେକ ଦେବୀ । ୪ ।

ହେ ବୃନ୍ଦାବତୀ, ଆସ ଚନ୍ଦ୍ରବତୀ,
ଗୃହ ସଖୀ ଅନୁଚରୀ ଯେତେ ଯୁବତୀ । ୫ ।

ଆସ ଲଳିତା ଗୋ ଚନ୍ଦ୍ର ବଳିତା,
ଦିବ୍ୟ ଅଷ୍ଟ ସପ୍ତ ଅଷ୍ଟ ଶତ ଗଣିତା । ୬ ।

ବୀଣା କାରିଣୀ, ବେଣୁ ତରୁଣୀ,
ବହନ ଚଳାଇ ଆସ ଦ୍ଵାରଧାରିଣୀ । ୭ ।

ଚନ୍ଦ୍ରା ସଖି (ଗୋ) ଆସ ସୁମୁଖି,
ସହସ୍ରେକ ସଖୀ ଗୃହ ସଙ୍ଗତେ ଲେଖି । ୮ ।

ଶ୍ରୁତ ସ୍ଵରୂପୀ ବିଶ୍ଵଧରୂପୀ,
ତୁଳସୀ ସହସ୍ର ଗୃହ ମଣ୍ଡଳୀ ଗୋପୀ । ୯ ।

---

୩—୨—ମଣ୍ଡଳୀ ଯୂଥ (ଖ, ଛ)

୬—୨—ଅଷ୍ଟ ଅଷ୍ଟ ବନିତା (କ, ଖ) ।

ଆସ ଗୋ ଚଳ, ସାଧ୍ୱୀ ବାଳୀ
ବତଶସହସ୍ର ଲକ୍ଷ ଗୁମ୍ଫ ମଣ୍ଡଳୀ । ୧୦ ।

ପ୍ରସନ୍ନା ବାଳ, ଆସ ସମ୍ଭାନ୍ତ,
ଛତିଶ ସହସ୍ର ଲକ୍ଷ ଗୁମ୍ଫ ମଣ୍ଡଳୀ । ୧୧ ।

ମୁକ୍ତ ସିଦ୍ଧାଙ୍ଗି, ଆସ ଗୋ ବେଗି,
ଅଠାଶୀସହସ୍ର କନ୍ୟା ନବାନୁରାଗୀ । ୧୨ ।

ରାସ ଭିଆଣ, ସୁମର ଆଣ,
ଯେ ଯାହା ବାଦ୍ୟ ଆୟୁଧ ପରିରମ୍ଭଣ । ୧୩ ।

ଯେଜଣ ବେଗେ, ଆସ ସଯୋଗେ,
ନୀପତରୁମୂଳେ ସଖି ଭେଟ ମୋ ଆଗେ । ୧୪ ।

ମୂରଲୀ ଧ୍ୱନ (ସେ) ଏସନ ଶୁଣି,
ଉଚ୍ଛନ୍ନ ହୋଇଲେ ସର୍ବ ଗୋପ ତରୁଣୀ । ୧୫ ।

ନ ରହେ ମନ, ନାହିଁ ଗିଆନ,
ଯେଜନେ ଆଗ୍ୟା ପ୍ରମାଣେ ରାସବଧାନ । ୧୬ ।

ମତ ବାତୁଳେ (ସେ) ଧାଇଁଲେ ଖେଳେ,
ଦେଖିଲେ ଦବ୍ୟମୂରତ କଦମ୍ବ ମୂଳେ । ୧୭ ।

ରାଧାଙ୍କୁ ଦେଖି ହସିଲ ସଖୀ,
ବୋଇଲ ସକଳେ ହଂସ ଗ୍ରସିଲ ନକ୍ର । ୧୮ ।

ଦୂତକା ବାଣୀ ରାଧକା ଶୁଣି,
ହସି ମୂଖ ବନ୍ଦ କଲେ ନବତରୁଣୀ । ୧୯ ।

ଏମନ୍ତେ କହୁ ଦୂତକା ପାଇଁ,
ଶ୍ରୀଚରଣ ପଖାଳି ଉଦକ ପିବଇ । ୨୦ ।

---

୨୦—୧:—କୃଷ୍ଣ କତକ ପାଇଁ (ଛ) ।

ଦେଖି ଶ୍ରୀହରି ଯାଉଁଛି ଧରି,
ଦକ୍ଷିଣ ହୃଦସ୍ଥ ଭାଗେ ଭିଡ଼ିଲେ ନାରୀ । ୨୧ ।

ବାମେ ରାଧିକା ଯାମେ ବୃନ୍ଦିକା,
ମଧ୍ୟେଣ ଶ୍ରୀକୃଷ୍ଣ ଶୋହେ ବେଢ଼ି ଗୋପିକା । ୨୨ ।

ହରି ଶବଦ କରି ଆନନ୍ଦ,
ଖଟିଲେ ଯେ ଯାହା ସେବା ଗୋପିକାବୃନ୍ଦ । ୨୩ ।

ଦେଖି ଶ୍ରୀପଦ ଉଚ୍ଛ୍ୱ କମଳ,
ଗୋଟିଏ ଗୋଟିଏ ଆଣି କୋଳ କରନ୍ତି । ୨୪ ।

ଲୋଭେ ଯୁବତୀ ମୁଖ ଚୁମ୍ବନ୍ତି,
ମଧୁ ଲୋଭେ ମାଛି ଯେହ୍ନେ ଜଡ଼ି ପଡ଼ନ୍ତି । ୨୫ ।

ଆସି କ ପାରି ରହିଲେ ପୂରି,
ମନ ଜାଣି ହରି ହୃଦ ବିସ୍ତାର କରି । ୨୬ ।

ଏକଇ ମୁଖ, ସବୁନ୍ତି ସୁଖ
ବହୁତ କାଳର ଗଲା ବିରହ ଦୁଃଖ । ୨୭ ।

ସନ୍ତୋଷ ହୋଇ, ଶ୍ରୀମୁଖ ଚାହିଁ,
ବୋଲନ୍ତି ଅଇଲ ପ୍ରଭୁ ମଲୁ ଜାଆଁଇ । ୨୮ ।

ଶ୍ରୀହରି ଭଣି, ତୁମ୍ଭେ ମୋ ଆଖି,
ଆଖିଠାରେ ହେଲା ସଖି କାହାର ଦେଖି । ୨୯ ।

ଜାଣ ତ ତାହା, ଗୋ କହିବା କାହା,
ପଡ଼ିଗଲ ମଧୁବନେ ପ୍ରମାଦ ଯାହା । ୩୦ ।

ତହିଁ ପଳାଇ, ସବ ଚଳାଇଁ,
ସମୁଦ୍ର ମଧ୍ୟରେ ଗଢ଼େ ବାନ୍ଧିଲୁ ନେଇଁ । ୩୧ ।

---

୨୫—୨:—ଉଡ଼ି ପଡ଼ନ୍ତି (କ, ଘ) ଜଡ଼ି ପିବନ୍ତି (ଛ) ।

ଥାନ ନଚଳ, ବସ୍ତୁର ଅଳ,
ବ୍ୟବସ୍ଥା ବେଷ୍ଟରେ ଗଲା ଏତେକ କାଳ । ୩୨ ।
ଆମ୍ଭର ଅସ୍ତେ, ତୁମ୍ଭର ଜସ୍ତେ,
ଏ କଥା ବସ୍ତୁର ସଖି କର ସଦପ୍ତେ । ୩୩ ।
ଏବେ ଗୋ ଯାଅ, ସୁବେଶ ହୁଅ,
ଯେ ଯାହା ମଣ୍ଡଳେ ପଞ୍ଚା ପଞ୍ଚାରେ ରହ । ୩୪ ।
ଆଗ୍ୟାଁ ପ୍ରମାଣେ, ନାୟିକା ଗଣେ,
ଆବୋର ପଦ୍ମଦଳ ଯେ ଯାହା କୋଣେ । ୩୫ ।
ଆବର ସଖି, ଯେତେକ ଦେଖି,
ଏକ ଅଧିଷ୍ଠାତ୍ରୀ ମୂଳେ ସହସ୍ରେ ଲେଖି । ୩୬ ।
ସେ ସଖୀମାନେ, ଗଲେ ବହନେ,
କୁସୁମ ତୋଳିବା ଅର୍ଥେ ପଶିଲେ ବନେ । ୩୭ ।
କଦମ୍ବମୂଳେ, କର୍ଣ୍ଣିକାଦଳେ,
କୋଟିଏ ସୂର୍ଯ୍ୟର ଜ୍ୟୋତ ଅତି ଉଜ୍ଜ୍ୱଳେ । ୩୮ ।
ତଥି ମଧ୍ୟରେ, ପଦ୍ମକେଶରେ,
ବିଜସ୍ତି ପରମାନନ୍ଦ ପଲଙ୍କ ପରେ । ୩୯ ।
ରାଧାଙ୍କ ସଙ୍ଗେ, ଦୂତିକା ରଙ୍ଗେ,
କର୍ପୂର ଚନ୍ଦନ ଗୋଳା ବୋଳନ୍ତି ଅଙ୍ଗେ । ୪୦ ।
ରଞ୍ଜିଲେ ଚୂଳ, 'ପେ' ମଣ୍ଡିଲେ ଫୁଲ,
ମୟୂର ଶିଖଣ୍ଡ ନିନ୍ଦେ ଚନ୍ଦ୍ରମଣ୍ଡଳ । ୪୧ ।
ଚନ୍ଦନ ଛଟା ସ୍ଥଳେ ରଞ୍ଜିତା,
ନବଢ଼ ଜଳଦେ କିଏ ଚନ୍ଦ୍ର ଉଦିତା । ୪୨ ।

---

୩୫—୨ :—ଆବୋର ରହିଲେ ପଦ୍ମ ଯେ ଯାହାର ଦଳେ (ଗ, ଚ) ବନେ (ଘ) ।

୪୧—୧ :—ମଣ୍ଡିଲେ ମୂଳ (କ, ଚ) ।

ଅଳକା ଶୋଭା, କସ କହିବା,
ଭ୍ରୂଲତା ଅତନୁ-ଧନୁ-ଗଞ୍ଜନ-ଆଭା । ୪୩ ।

ନୟନ ବାଣ, ସେ ଦର୍ପେ ପଗ୍ରଣ
ଖଞ୍ଜିଲେ ବାଗ୍ରଧଫଳ ନାସା ପୁଟେଣ । ୪୪ ।

କୁଣ୍ଡଳମଣି, ଗଣ୍ଡେ ମଣ୍ଡଣି,
କଣ୍ଠରେ ଖଞ୍ଜିଲେ ସୂର୍ଯ୍ୟ ଉଜ୍ଜ୍ୱଳ ମଣି । ୪୫ ।

ବଳଣ ଭୁଜେ, (ସେ) ମର୍କତେ ଗ୍ରଜେ
ଅଙ୍ଗଦ କଙ୍କଣ ବେନ କରେ ବଗ୍ରଜେ । ୪୬ ।

କଟୀରେ ଧଟୀ, ପୀତ ପ୍ରକଟି,
କୁଞ୍ଚ କାଛୁ ପିନ୍ଧାଇଲେ ଖଞ୍ଜିଲେ ଘଣ୍ଟି । ୪୭ ।

ରତ୍ନ ମେଖଳା, କିଙ୍କିଣୀମାଳା
ସଜଳ ଜଳଦେ କି ଏ ତଡ଼ିତ ଖେଳା । ୪୮ ।

ଅଙ୍ଘ୍ରି ଯୁଗଳେ, ମଞ୍ଜୀର ଦୋଳେ,
ସେ ପାଦକମଳେ ଦେବ ମନଭ୍ରମଳେ । ୪୯ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ସପ୍ତଦଶ ଛାନ୍ଦେ,
ଗୋପିକା ପଟଳ ମନ ଉଲ୍ଲାସ ବନ୍ଧେ,
ସପ୍ତଦଶ ଛାନ୍ଦ ବର୍ଣ୍ଣିନେ କେବଣ ଚରିତ,
କହିବାକୁ ଆଜ୍ଞା ହେଉ ଏଥିର ସେ ଚରିତ । ୧୭ ।

—✽—

୪୮ ପଦ ପରେ "ଛ"ରେ (ତ୍ରଭୂ) ପାଦେ ପାଦୁତ—(୯ତ) ଶବଦ ଚାତ ଯୁବ ମାରଣେ କଏ କାମ ପାଢ଼ଡ଼ । ଏ ପଦକ ଅଛୁ ॥

# ସପ୍ତଦଶ ଛାନ୍ଦ

—*—

ରାଗ—ବଙ୍ଗଳା କଉଶିକ ।

ରାଧା ଅଙ୍ଗ ତେଜ ଉଜ୍ଜ୍ୱଳ ଜ୍ୟୋତି,
ଛବି ଛଟକେ ଗତ ଭ୍ରାନ୍ତ ମୂର୍ତ୍ତି ।
ଦେଖି ମୋହ ଗଲେ ନୃପକୁମାରୀ,
ହେଲେ ହଜିଲ ଜ୍ଞାନ ସବୁଙ୍କର ।
ଶ୍ୟାମ ହେ ସେ କେତେହେଁକ ବେଳେ,
ଚେତନା ପାଇ ଉଠିଲେ ସକଳେ ।୧।
ଏକ ଉପରେ ଆରେକ ଆଉଜି,
ବସିଲେ ସବୁନ୍ତ ନୟନ ବୁଜି ।
ରୁନ୍ଧି ଲୋଡ଼ିଲେ ନ ପାରନ୍ତି ରୁନ୍ଧି,
ମୋହେ ଡଳହଳ ବେଭଳ କହୁ ।
ଶ୍ୟାମ ହେ, ପୁଣି ପୁଣିହିଁ ଉଠି,
ସ୍ୱପ୍ନ ପ୍ରାୟେ ବଳବଳାଇ ଉଠି ।୨।
କ୍ଷଣେ କ୍ଷଣେ ଜ୍ଞାନ ହଜିଲ ଯେଣୁ,
ଚେତ ପ୍ରଭୁଙ୍କୁ ଚିନ୍ତା କଲେ ତେଣୁ ।
ବୋଇଲେ ପ୍ରଭୁ ରକ୍ଷା କର ତୁମ୍ଭେ,
ତୁମ୍ଭେ ନ ରଖିଲେ ଝପିଲୁ ଆମ୍ଭେ ।
ପ୍ରଭୁ ହେ, ଦେଖି ଆସିଛୁ ଯାହା,
କୃପା କଲେ ସିନା ଦେଖିବୁଁ ତାହା ।୩।
ଶରୀରେ ଅନ୍ତର ଧଇର୍ଯ୍ୟ ରହୁ,
ମୋହ ଗୁଡ଼ି ଉଦ୍ୟ ଚେତନା ହୋଉ ।
ଯେବେ ଏ ହୃଦୟ ଦୃଢ଼ ହୋଇବ,
ମନ ଅଙ୍କରେ ଲୋଚନ ରହିବ ।

ପ୍ରଭୁ ହେ, ତେବେ ଲଭିବୁ ସୁଖ,
ହରିବୁଁ କୋଟିଏ ଜନ୍ମର ଦୁଃଖ । ୪ ।
ପ୍ରିୟାଙ୍କ ମନ ଜାଣି ଶ୍ରୀବଂଶୀ,
ଡାକ ଦେଲେ ଶୂନ୍ୟ ମଣ୍ଡଳେ ରହି ।
ଯେଉଁ ରୂପ ଦେଖି ହୋଇଲ ମୋହ,
ସେହି ରୂପରେ ମନ ବୁଦ୍ଧି ଦଅ ।
ପ୍ରିୟେ ଗୋ, ହେହି କୃପା କରିବେ,
ତାଙ୍କ ତେଜ ରମ୍ଯ ହୃଦେ ଭରିବେ । ୫ ।
ଯେବେ ରମ୍ଯ ହୃଦ ଦଢ଼ ହୋଇବ,
ମନ ନଚଳେ ନେତନେ ରହିବ ।
ଦେଖିବ ତାଙ୍କ ସର୍ବସାର ଲୀଳା,
ସବୁଠାରେ ଯେତେ ହୋଇବ ଖେଳା ।
ପ୍ରିୟେ ଗୋ ! ମନ ନିର୍ମଳ କର,
ନିର୍ଭୟେ ହୋଇ ତାଙ୍କୁ ଚିତ୍ତେ ଧର । ୬ ।
ଶୁଣି ଶୂନ୍ୟରୁ ବାଣୀ ଗଜଜେମା,
ଚଳିଲେ ମନେ ରାଧା ରୂପସୀମା ।
ନିର୍ଭୟେ ହୋଇଣ ଝାସି ପଶିଲେ,
ରାଧା-ରୂପ-ତେଜେ ଯାଇଁ ମିଳିଲେ ।
ଶ୍ୟାମ ହେ, ମନେ ବିଶ୍ଵାସ ହୋଇ,
ସେହି ତେଜ ହୃଦେ ପୂରେଇ ରହି । ୭ ।
ରୁକ୍ମିଣୀ ଆଦି ଅଷ୍ଟପାଟବଂଶୀ,
ଗରୁଡ଼ ପୃଷ୍ଠରେ ସମସ୍ତେ ବସି ।
ଗୁପତେ ଦେଖନ୍ତି ଉପରେ ଥାଇ,
ବୋଲନ୍ତି ରାଧିକା ଅଟନ୍ତି ଏହି ।
ସଖେ ଗୋ, ଧନ୍ୟ ଧନ୍ୟ ମହିମା,
ଏମନ୍ତ ଯେଣି ବୃଷଭାନୁ ଜେମା । ୮ ।

ଜମ୍ବୁନଦରୁ ଜମ୍ବୁନଦ ଆଣି,
ଶତପତ୍ର ଡଣ୍ଡି ଦେଲା ଡାକ୍ତୁଣି ।
ଗାଲି ପକାଇ ଢାଳିଲା ରୁଚିତ,
କଟାକ୍ଷ ବାଣେ ବନ୍ଧୁ କଲା ହତ ।
ସହେ ଗୋ, ଏହୁ ଉହାତେ ଆଇ,
ତାକୁ ଜୀଆଇଲା ଅମୃତ ଦେଇ । ୯ ।
କୋଟି କୋଟି ଚନ୍ଦ୍ର କଳଙ୍କ କାଢ଼ି,
ସୁଧା ସିନ୍ଧୁରେ ବୁଡ଼ାଇବା ମାଡ଼ି ।
କୋଟିଏ କଲେକ୍ଷ କାଢ଼ି ସବ ମେଦ୍ର,
କାମକୁନ୍ଦରେ କୁନ୍ଦଥିବ ବିଧି ।
ସହେ ଗୋ, ଚନ୍ଦ୍ର ଏରୂପେ କୋଟି,
ରାଧିକା ମୁଖଚନ୍ଦ୍ରକୁ ନ ଘଟି । ୧୦ ।
ଧନ୍ୟ ଏ କୁଟିଳ-କୁନ୍ତଳ-ଶୋଭା,
କାଞ୍ଚନମୂର୍ତ୍ତିକି ମର୍କତ-ପ୍ରଭା ।
ଧନ୍ୟ ଏ ଚଟୁଳ ପଟ ନିର୍ମଳା,
ଭ୍ରୂଲତା ଭଙ୍ଗିମା ନୟନ ଖେଳା ।
ସହେ ଗୋ, ଧନ୍ୟ ଶୋଭା ଏ କର୍ଣ୍ଣ,
ବନ୍ଧୁକ ପୁଷ୍ପ ପାଏ ଗଣ୍ଡ ବର୍ଣ୍ଣ । ୧୧ ।
ଧନ୍ୟ ଏ ଚିବୁକ ଧନ୍ୟ ଏ ଓଷ୍ଠ,
ଅଧର କି ? ବିମ୍ବ ଅରୁଣ ନଷ୍ଟ ।
ଧନ୍ୟ ଏ ମୃଦୁହାସ ବଦନ ଶୋଭା,
ନାସିକାଦଣ୍ଡ ଝଟ ଝଟ ଆଭା ।
ସହେ ଗୋ, ଧନ୍ୟ ଯୁଗ୍ମ ଭ୍ରୂ ବାଣୀ,
କନ୍ଦର୍ପ ଅଇଲା ବୀଣାବାଜେଣୀ । ୧୨ ।
ଧନ୍ୟ ଏ ସୁନ୍ଦର ସାରଙ୍ଗ ଗଳା,
ଧନ୍ୟ ଏ କୁଚକୁମ୍ଭ ଘଣ୍ଟଶିଳା ।

ଧନ୍ୟ ଏ ଭୁଜପାଣି କୋକନଦ,
ଧନ୍ୟ ଏ ସୁନ୍ଦର ପଙ୍କଜ ପାଦ।
ସହେ ଗୋ, ଧନ୍ୟ ନଖଚନ୍ଦ୍ରିକା,
ଚନ୍ଦ୍ର ପଣକନ୍ତେ ହେଉଛି ଶିଖା । ୧୩ ।
ଉଲଟ ରମ୍ଭା କ ଜଘନ ଯୁଗ,
ନିତମ୍ବତଟ ସିଂହାସନ ନଗ ।
ଧନ୍ୟ ଏ ତ୍ରିବଳି ଲଳିତମଧ୍ୟା,
କାମ ଡମ୍ବରୁ କ ଏ ଦୁଇ ଅଧା ।
ସହେ ଗୋ, ଧନ୍ୟ ରଙ୍ଗପଟନୀ,
କୁଞ୍ଚ ପିନ୍ଧିଅଛି ରଙ୍ଗେ ସଜନୀ । ୧୪ ।
ଘଣ୍ଟି ଘାଗୁଡ଼ି ରହୁ ଓଢ଼ଣୀ,
କେତେଠାରେ କେତେ ରହୁ ଖଞ୍ଜଣି ।
ବଦ ମୁଦ୍ରିକା ବଳୟ ବାହୁଟି,
ହାର ତାଟଙ୍କ ନାକଚଣା କଣ୍ଠି ।
ସହେ ଗୋ, ଏ ତ କାମ କାଛେଣୀ,
କାଛି ସଜ କଲ କଉଁ ରମଣୀ । ୧୫ ।
ଆଉ ପାଖେ ଅଛି ସେ ପସ୍ତ ଦୂତୀ,
ଏହି ତ ସଖୀ ଶୋଭୁ ସେହମତି ।
ରାଧା ବଦନେ ସୁଜାଣ ପଣକୁ,
ତେଣୁ ସେ ଦୂତୀ ବୋଲନ୍ତି ଏହାଙ୍କୁ ।
ସହେ ଗୋ, ଦୁଇ ପାଶରେ ଦୁଇ,
ଏକୁ ଆରେକ କୃଷ୍ଣମନ ମୋହି । ୧୬ ।
ଧନ୍ୟ ଏ ସୁନ୍ଦର ଦୁଇ ମୂରତି,
ଏବେ ସେ ଏହାଙ୍କ ମନ ଧରନ୍ତି ।
ଧନ୍ୟ ଏ ଆମ୍ଭର ଜୀବନ ସଖୀ,
ପ୍ରଭୁଙ୍କ ପ୍ରସାଦେ ଏ ସୁଖ ଦେଖି ।

ସଦ୍ଧେ ଗୋ  ଧନ୍ୟ ଗୋପିକା ବୃନ୍ଦ ।
କେସନେ ମୁରୁଛି ଥିଲେ ଗୋବନ୍ଦ । ୧୭ ।
ଧନ୍ୟ ଏ କଦମ୍ବ କଲପତରୁ,
କଲ୍ପକଲ୍ପାନ୍ତରେ ଅଚଳ ମେରୁ ।
ଗରୁଡ଼ ଖଗ ଏହୁ ଅଛି ସଦ୍ଧ,
ଯେଉଁ ଗରୁଡ଼ ଗରୁ କୋଟି ମନ୍ଦ ।
ସଦ୍ଧେ ଗୋ, ଧନ୍ୟ କାଳନ୍ଦୀ ନଦୀ,
କଣଲେ କାମନା ହୋଇବ ସିଦ୍ଧି । ୧୮ ।
ଧନ୍ୟ ଏ କଲ୍ପଦ୍ରୁମ ସର୍ବଶୋଭା,
ସୁଧା ଅଙ୍ଗ ତେଜ ସୁବର୍ଣ୍ଣ ଆଭା ।
ସର୍ବ ବୃକ୍ଷମୂଳେ କାଞ୍ଚନ ବେଢ଼,
ଅଷ୍ଟରତ୍ନମାନେ ଅଛନ୍ତି ଭେଦ ।
ସଦ୍ଧେ ଗୋ, ଧନ୍ୟ ଏ ଫୁଲ ଫଳ,
କ୍ରୀଡ଼ନ୍ତି ଶୁକ ପିକ ଭୃଙ୍ଗ କୁଳ । ୧୯ ।
କାଳନ୍ଦୀ ଜଳ ଶୀତଳ ସୁଗନ୍ଧ,
ଯେଣେ ପବନ ବହେ ମନ୍ଦ ମନ୍ଦ ।
ତରୁଣ ତମାଳ ଦଳ ତରଳେ,
କସ୍ତୁରୀ ଗନ୍ଧ କି ମର୍କତ ଦଳେ ।
ସଦ୍ଧେ ଗୋ, ସର୍ବ ପୁଷ୍ପଙ୍କ ବାସ,
ବନ ବହୁଳ ବହେ ଦଶଦଶ ।
ପୁଷ୍ପ-ତରୁବର-ପତ୍ରଗ ଖସେ,
କି ଏ ଗୃଚେଶ ଅମ୍ବର ବରଷେ ।
ଘଞ୍ଚ ବଲ୍ଲେଳ ସଞ୍ଚ ବୃକ୍ଷ ସାଜେ,
ଲତାଲିଙ୍ଗିତ କାନ୍ତ କାନ୍ତା ବଜେ ।
ସଦ୍ଧେ ଗୋ, ଧନ୍ୟ ଧନ୍ୟ ଏ ବନ,
ତପୁଁ ଶୃଙ୍ଗାର ଯାଏ ଅଛି ସ୍ଥାନ । ୨୧ ।



କେତେଠାରେ କେତେ ଦେବତା ସ୍ଥାନ,
ଯୋଗୀ ତପସ୍ୱୀ ମୁନି ଧରେ ଧ୍ୟାନ !
ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳୀ,
ମର୍କତ ମାଣିକ କାଞ୍ଚନେ ଝଳି ।
ସହେ ଗୋ, ସୁର ଗନ୍ଧର୍ବ ଆସି,
ଗନ୍ଧର୍ବ ସଙ୍ଗେ ନୃତ୍ୟ ଗୀତ ଘୋଷି । ୨୨ ।

ଯହିଁ ବିହାର କରେ ଗୋପୀ କାହ୍ନ,
କସ ପଟ୍ଟାନ୍ତର ଦେବା ସେ ସ୍ଥାନ ।
ଶୁଣୁଥିଲୁ ଯାହା ଦେଖିଲୁ ତାହା,
ତେବେ ବଡ଼ପଣ କହିବୁଁ କାହା ।
ସହେ ଗୋ, ଏତେ ବଗୃଣ ଆଗ,
ଦାସୀପଣକୁ ନିଜ ନୋହୁ ଯୋଗ୍ୟ । ୨୩ ।

ଏବେ ଗୋ ସଖି ଏମନ୍ତ ବିଗୃଣ,
ନ ଯିବା ଆମ୍ଭେ ଦ୍ୱାରକା ପୁରୀ ।
କେମନ୍ତେ ଆମ୍ଭଙ୍କୁ ରାଧା ଜାଣିମେ,
ତାଙ୍କ ପରଜନ ସଙ୍ଗେ ଗଣିମେ ।
ସହେ ଗୋ, ତେବେ ଲଭିବା ଭବ,
କୃପା କରିବେ ପ୍ରଭୁ ପଦ୍ମନାଭ । ୨୪ ।

ଦେଖ ଦେଖ ସହି ଶ୍ରୀକୃଷ୍ଣ ରୂପ,
ଏ ରୂପ କାହିଁ କରିଥିଲେ ଗୋପ୍ୟ ।
ଏବେ ଧରିଲେ ନିଜ ରୂପ ସାର,
ରାଧା ରୂପକୁ ଏ ସମ ସୁନ୍ଦର ।
ସହେ ଗୋ, ଦେବ ନର୍ତ୍ତକୀ ଭଣି,
ଭିନ୍ନ ନୋହ ତୁମ୍ଭେ ରାଧା ରୁକ୍ମିଣୀ । ୨୫ ।

ଗାହା:—ଇତି ଶ୍ରୀ ରହସ୍ୟ-ମଞ୍ଜରୀ ସପ୍ତଦଶ ଛନ୍ଦେ,
ରାଧିକା ଦର୍ଶନ ରୂପ ରୁଚିର ବନ୍ଧେ,
ଅଷ୍ଟାଦଶ ଛନ୍ଦ ବର୍ଣ୍ଣନେ କେବଣ ଆନନ୍ଦ,
କହିବାକୁ ଆଜ୍ଞା ହୋଇ ଶ୍ରୀ ପରମାନନ୍ଦ । ୧୭ ।

———

## ଅଷ୍ଟାଦଶ ଛାନ୍ଦ ।

—:():—

ରାଗ—ବସନ୍ତରାଗେଣ ଗୀୟତେ ।

(ସଖି ଗୋ) ଦ୍ୱାରକା ଯୁବତୀ ମୋହି ହୋଉଛନ୍ତି
ରାଧାରୂପ-ଶୋଭା ଚାହିଁ,
ଏମନ୍ତେ କୃଷ୍ଣ ଫୁଲବନେ ପଶିଲେ
ଗୋପୀ ଫୁଲ ତୋଳାଠାଇଁ ଗୋ ।
ଦେଖ ଦେଖ ସଖି ଏହୁ ବୃନ୍ଦାବନେ
ବିହରନ୍ତି ଗୋପବାଳୀ,
ବିବିଧ ବର୍ଣ୍ଣେ ପୁଷ୍ପମାନ ତୋଳନ୍ତି
ନାନାରଙ୍ଗେ କୁତୂହଳୀ ଗୋ । ୧ ।
(ସଖି ଗୋ) ସହଜେ ଗତି- ନୃତ୍ୟରଙ୍ଗେ ଚାଲନ୍ତି
ବିଚିତ୍ର ଭଙ୍ଗିମା ହୋଇ,
କଥା କହନ୍ତି ଗୀତସ୍ୱରେ ଆଳପି
ପୁଚ୍ଛନ୍ତେ ହସ୍ତକ ଦେଇ ଗୋ ।
ହସନ୍ତି ଖେଳନ୍ତି ରସନ୍ତି ମିଶନ୍ତି
ତୋଷନ୍ତି ଏକୁ ଆରକେ,
କୃଷ୍ଣକୁ ଭାବନ୍ତି, ବସନ୍ତେ ଗାବନ୍ତି
ମଦନ-ମନ-ହରିକେ ଗୋ । ୨ ।

(ସଖି ଗୋ) କେହୁ ବୃକ୍ଷେ ଉଠି କୁସୁମ ତୋଳନ୍ତି
ମୁଖ ପଦ୍ମଗନ୍ଧ ପାଇ,
ପୁଷ୍ପ ତେଜି ଭୃଙ୍ଗ ବଦନ ଚୁମ୍ବନ୍ତେ
ବୃକ୍ଷରୁ ପଡ଼ନ୍ତି ତେଇଁ ଗୋ ।
ପଳାନ୍ତେ ଗୋଡ଼ାନ୍ତି ଚୁମ୍ବନ୍ତେ ଛଡ଼ାନ୍ତି,
ଛଡ଼ାନ୍ତେ ପଶନ୍ତି ବାସେ,
କେଶ ବସନ ଦୂରେ ଫେଡ଼ି ଝାଡ଼ନ୍ତେ
ଦୂରେ ସଖୀଜନ ହସେ ଗୋ । ୩ ।
(ସଖି ଗୋ) କୋଟି କୋଟି ଚନ୍ଦ୍ର ଉଦେ କି ହୋଇଛୁ
ଉଜ୍ଜ୍ୱଳ ଏ ବୃନ୍ଦାବନ,
ମୁଖଚନ୍ଦ୍ର ଜ୍ୟୋତ ରସାଣିଲି କ୍ଷିତ
ସ୍ଫଟିକ ପୀଠ ଯେସନ ଗୋ ।
ଗୋଟି ଗୋଟି ହୋଇ ବାଶ ଦଶୁଛନ୍ତି
ଯାହାର ଯେମନ୍ତ ବର୍ଣ୍ଣ
ଫୁଲ ଫଳ ତରୁ ଲତା ଖଗ ମୃଗ
ସବ ଦ୍ରବ୍ୟ ରୂପ ଚିହ୍ନ ଗୋ । ୪ ।
( ସଖି ଗୋ) ଗୋପୀ ଅଭିରଙ୍ଗୀ କେତେ ଜାଣେ ଭଙ୍ଗି
ଛବ ଛଟକକୁ ଦେଖ,
ସ୍ତ୍ରୀହିଁକା ସ୍ତ୍ରୀରୂପ କନ୍ଦର୍ପ କରୂପ
ପୁରୁଷ ହୃଦକୁ ଯୋଖି ଗୋ ।
ଦେଖ ଦେଖ ସଖି ଗୃହାଣୀ ତେରଛ-
ବାଣେ ପାଷାଣ ତରଳବ,
କାଷ୍ଠ-ପ୍ରତମା ଭେଦ ବାଧ ଉଠିବ
ମଦନ ସରେ ମଜ୍ଜିବ ଗୋ । ୫ ।
(ସଖି ଗୋ) ବାରୁ ! ଏ ସଖୀ ଶ୍ରୀକୃଷ୍ଣ ବନ୍ଧୁ ଦୁଃଖୀ
ରୂପେ ପଟାନ୍ତର ନାହିଁ,

ଏହାଙ୍କ ରୂପ ଗୁଣ        କହୁ ନୋହିଲେ
ଧଇର୍ଯ୍ୟ ରହିବ କାହିଁ ଗୋ ।
ପୁରୁଷ ହୋଇ କେ        ହୃଦୟ ଧରିବ
ନାରୀ କି ନାରୀ ନ ମୂର୍ଚ୍ଛି,
କୋଟିଏ ବ୍ରହ୍ମାଣ୍ଡେ        ଗୋଟିଏ ଏରୂପେ
ଖୋଜିଗଲେ କାହିଁ ଅଛୁ ଗୋ । ୬ ।
(ସଖି ଗୋ) ବିଚିତ୍ର ଗନ୍ଧ ଆଢ଼-        ଚଢ ମାରୁଣ
ବୃକ୍ଷରେ ବସନ୍ତ ଡେରିଁ,
ବିବିଧ ପୁଷ୍ପ ନାନା        ରଙ୍ଗେ ଡୋଳନ୍ତ
ଗୋବିନ୍ଦର ଗୀତ ଗାଇ ଗୋ ।
ରଙ୍ଗିଣୀ ଚୂତ —        ଅଙ୍କୁର ଅରବିନ୍ଦ
ନଗନ୍ଧ କୁନ୍ଦ ପୁନ୍ନାଗ,
ଜାତି ଯୂଥୀ ମଲ୍ଲୀ        ମାଳତୀ ସେବତୀ
ଧାତ୍ରୁକୀ ମୃଦୁ ଲବଙ୍ଗ ଗୋ । ୭ ।
(ସଖି ଗୋ ଟଗର, ଉତ୍ସଟ        ପାଟଳୀ, ପଳାଶ,
କଦମ୍ବ, ରଙ୍ଗବଧୂଲି,
ଚମ୍ପା, ନାଗେଶ୍ୱର,        ମଦନା, ମାଧବୀ
ସୁଖଭଦ୍ରା ଲଜ୍ଜାକୁଳୀ ଗୋ ।
ଦାରେହାଦାଢ଼        କରୁଣା କୋକନଦ
କୁରୁବକ ମୁଚକୁନ୍ଦ,
ମୃଦୁ ଶିରୀଷ        କଞ୍ଚନ କୁରୁବେଲୀ
ରଙ୍ଗ ଦୂଲଲ କୁମୁଦ ଗୋ । ୮ ।
(ସଖି ଗୋ) ଗଙ୍ଗଶିଉଳ        ସୁରଙ୍ଗ ଅରବିନ୍ଦ
ସୁନାସ୍ତି, ପାରିଜାତକ,
ନୀଳ-ଉତ୍ପଳ, ମନ୍ଦାର        କର୍ଣ୍ଣିକାର
ସୁଗନ୍ଧ ମଲ୍ଲି ଅଶୋକ ଗୋ ।

ଶତବର୍ଗ ଛୁରଅନା ରଙ୍ଗ ମଲ୍ଲି,
ମୃଦୁଲା ଏ ଚନ୍ଦ୍ରବିମ୍ବା,
ଅପରାଜିତା ବଉଳ- ବୃନ୍ଦ ତାର-
ଝଲକ ଏ ମଧୁ ସ୍ରବା ଗୋ । ୯ ।
(ସଖି ଗୋ) ଦମ୍ଣା, ତୁଳସୀ ମାଧବୀ ମରୁଆ
କୁଟିଳା କାମଦାୟିନୀ,
ଏରୂପେ ନାନା ପୁଷ୍ପ ତୋଳି ଆସନ୍ତି
ଆନନ୍ଦେ ଗୋପକାମିନୀ ଗୋ ।
ଶ୍ରୀକୃଷ୍ଣ ପାଇଁ ସୁଗନ୍ଧ ପୁଷ୍ପ ବାଛୁ
ବସି ଗୁନ୍ଥିଲେ ସୁନ୍ଦରୀ,
ଶ୍ୱେତ ରକ୍ତ ନୀଳ ପୀତ ବର୍ଣ୍ଣ ବର୍ଣ୍ଣ
ବୈଜୟନ୍ତୀ ମାଳା କରି ଗୋ । ୧୦ ।
(ସଖି ଗୋ) ଅତି ଯତ୍ନ କରି ଥୋକାଏ ଗୁନ୍ଥିଲେ
ରାଧିକା ଦୂତିକା ପାଇଁ,
ଅଧିଷ୍ଠାତ୍ରୀ ଗୋପୀ- ମାନଙ୍କୁ ଥୋକାଏ
ଗୁନ୍ଥି ସଜାଡ଼ିଲେ ସବୁ ଗୋ
ଆପଣା ଅର୍ଥେଣ ଥୋକାଏ ଗୁନ୍ଥିଣ
ସୁବେଶ ହୋଇଲେ ବେଗେ,
ଗନ୍ଧ ଚନ୍ଦନ କର୍ପୂର ମୃଗମଦ
ସାମଲଲେ ସର୍ବଅଙ୍ଗେ ଗୋ । ୧୧ ।
(ସଖି ଗୋ) ଗନ୍ଧ ପୁଷ୍ପ ଯେନ କବରୀ ରଞ୍ଚିଲେ
ବେଢ଼ି କେତକୀ ପାଖୁଡ଼ା,
ନିର୍ମଳ କପୋଳେ ମଣ୍ଡାଳ ରଞ୍ଚିଲେ ଅଳକା
ବଳି ମଲ୍ଲିକଢ଼ୀ ଝଡ଼ା ଗୋ,
ବଦନଚନ୍ଦ୍ର ଉପରେ ଶୋଭା କଏ
ବେଢ଼ି ଘନତଳ ତାରା,

କୈରବ ଶ୍ରେଣୀ ବେଣୀମାନେ ମଣ୍ଡିଲେ
ମଦନ-ମନ-ବିକାଶ ଗୋ । ୧୨ ।
(ସଖି ଗୋ) ନବ ବିକଚ ଅବତଂସ ଅଶୋକେ
କେ ଖଞ୍ଜେ ପଦ୍ମ ଚମ୍ପକ,
କୁରୁଅନା-କଢ଼ୀ ନାଶାରେ ଖଞ୍ଜିଲେ
କଣ୍ଠେ କଣ୍ଠୀକାର କାପ ଗୋ,
କଣ୍ଠେ ଖଞ୍ଜିଲେ ହାର ମଲ୍ଲି ମାଧବୀ
ନବୀନ-କଳିକା ଗୁନ୍ଥି,
ନାଗେଶ୍ୱର ପୁଷ୍ପେ ମେଖଳା ସାଜିଲେ
ଯେମନ୍ତେ ମୋହିବେ ପତି ଗୋ । ୧୩ ।
(ସଖି ଗୋ) ନାନା କୁସୁମେ ତାଡ଼ ଚୂଡ଼ୀ ସାଜିଲେ
ଭୁଜଲତାକୁ ବନାଇ,
ବିଚିତ୍ର ପୁଷ୍ପଦ୍ରୁମ ପ୍ରାଏ ଦିଶିଲେ
ସମସ୍ତେ ତଥି ଅନାଇ ଗୋ,
ମଦନଶର— ସ୍ୱରୂପମାନ କି ଏ
ସମରେ ଅଛନ୍ତି ସାଜ ?
ପୁଷ୍ପ ଲତାରେ କି କୋକିଳ ସ୍ୱଗ୍ରୁହି
ବାଣୀ ଶୁଣି ମନ ମଜ୍ଜି ଗୋ । ୧୪ ।
(ସଖି ଗୋ) ଧନ୍ୟ ଏ ଗୋପୀ ବିଚିତ୍ର ବହୁରୂପୀ
ଆମ୍ଭ ଜୀବନ ହିଁ ଧନ୍ୟ,
କେତେ କାଳ ବସି କେତେ ତପକଲୁଁ,
ଦେଖିଲୁଁ ଚର୍ମନୟନ ଗୋ ।
ପାଷାଣ ପ୍ରତିମା ଦେଖିଲେ କାନ୍ଦିବ
ଏହାଙ୍କ ବିଚିତ୍ର ଭ୍ରାନ୍ତି,
ଏ ସ୍ୱବ ଗୁଣିକି ପ୍ରଭୁ ନ କାନ୍ଦିବେ
ଏକେ ସେ ସ୍ୱବମୂରତି ଗୋ । ୧୫ ।

(ସଖି ଗୋ) ଦିବ୍ୟ ସୁବେଶ ହୋଇ ସର୍ବ ଗୋପିନୀ
ପ୍ରବେଶ ହୋଇଲେ ଯାଇ
ଯେ ଯାହା ନାୟିକା- ମାନଙ୍କୁ ମଣ୍ଡିଲେ
ବିବିଧ କୁସୁମ ଦେଇ ଗୋ ।
ରାଧିକା ଦୂତିକା ଏ ଦୁଇ ସଖୀଙ୍କି
ସମସ୍ତେ ସୁବେଶ କରି,
ସୁଶୀତଳ ଜଳେ ଚତୁଃସମ ଗୋଳି
ଶ୍ରୀଅଙ୍ଗେ ବୋଳିଲେ ବାଳୀ ଗୋ । ୧୬ ।
(ସଖି ଗୋ) ହାର ତାଡ଼ ଚୂଡ଼ୀ ମୁଦ୍ରିକା ମେଖଳା
ତାଟଙ୍କ ନାସାବେସରୀ,
ଅଳକା ଅବତଂସ କେଶ ମଣ୍ଡିଲେ
କୁସୁମେ ଦେବ ତରୁଣୀ ଗୋ ।
ନୂପୁର ବରଚରଣେ ଖଞ୍ଜି ବାଳୀ
ପ୍ରଣମ୍ୟ ହୋଇ ଶୋଇଲେ,
ତୁମ୍ଭ କୃପାରୁ ପ୍ରଭୁସେବ ଲଭିବୁଁ
ଶ୍ରୀ ଆଜ୍ଞା ହୋଉ ବୋଇଲେ । ୧୭ ।
(ସଖି ଗୋ) ହସି ରାଧିକା ସଖୀଙ୍କି ଠାରି ଦେଲେ
ସଖୀହସି କୋଳ ଦେଇ,
ଏମନ୍ତ କଥା କହି ପ୍ରାଣସଜନି
ତୁମ୍ଭେ ତାଙ୍କ ମନ ଦେଖି ଗୋ ।
ପ୍ରଭୁଙ୍କ ନମସ୍ତେ କି ପୁଷ୍ପ ଆଣିଛ
ଆଣି ସୁବେଶ କରିବା,
ସବୁ ଦେଇ ମାଳେ ମାଳେ ଗୋପ୍ୟ କଲେ
ସ୍ୱହସ୍ତେ କରିବେ ସେବା । ୧୮ ।
(ସଖି ଗୋ) ବାମ ଦକ୍ଷିଣେ ରହି ବେନି କିଶୋରୀ,
ସାଜିଲେ କିଶୋରମୂର୍ତ୍ତି,

ବିବିଧ କୁସୁମ ଶ୍ରୀଅଙ୍ଗେ ମଣ୍ଡିଲେ
ବେଢ଼ି ସକଳ ଯୁବତୀ ଗୋ ।
ମାଳାମାନ ଧରି ଉତ୍ସବ ରଚିଲେ
ଶ୍ରୀକୃଷ୍ଣ ଖୁନ୍ଦିବା ପାଇଁ
ହସି ଖୁନ୍ଦାନ୍ତେ ସମସ୍ତେ ମାଳ ଦେଲେ
ଶ୍ରୀହରି ହୃଦେ ଲମ୍ବାଇ ଗୋ । ୧୯ ।
ଏମନ୍ତେ କେତେ କେତେ ରଙ୍ଗେ ଯୁବତୀ
ମୋହିଲେ ଦିବ୍ୟ ମୂରତି,
ବିବିଧ ବିନୋଦ ହାସ ପରିହାସ
ଯାହାର ଯେମନ୍ତ ଖିତି ଗୋ,
ଶ୍ରୀ ଗୋପୀନାଥଙ୍କ ମହିମା ଦୁର୍ଲଭ
ପ୍ରେମିକକୁ ପ୍ରେମରଙ୍ଗ,
ମହାରସେ ପଶି ଦେବ ଋଷିଗଣ,
ସେ ଅବା ଯେମନ୍ତ ଭୃଙ୍ଗ ଗୋ । ୨୦ ।
(ଗାହା) ଇତି ଶ୍ରୀ ରହସ୍ୟମଞ୍ଜରୀ ଅଷ୍ଟାଦଶ ଛାନ୍ଦେ,
ଗୋପିକା ନିକର ଫଳ ବିନୋଦ ବନ୍ଧେ,
ଊନବିଂଶ ଛାନ୍ଦ ବର୍ଣ୍ଣିବେ କେବଣ ରଙ୍ଗ,
କହିବାକୁ ଆଜ୍ଞା ହୋଉ ଏଥିର ପ୍ରସଙ୍ଗ । ୧୮ ।

—):o:(—

## ଊନବିଂଶ ଛାନ୍ଦ ।

:-★-:

ମହ୍ଲାର ରାଗେଣ ଗୀୟତେ ।

କେଳି କଳାନିଧି କଦମ୍ବମୂଳେ
ଗୋପ କଦମ୍ବ ନିତମ୍ବିନୀ ମେଳେ । ୦ ।
ରଞ୍ଜିଲେକ ରାସମଣ୍ଡଳୀ ଲୀଳା,
ବାଦ୍ୟ ବିନୋଦେ ନୃତ୍ୟରଙ୍ଗେ ଖେଳା ।

*

ନଟବର ନାଗର ମଧ୍ୟେ ବିରାଜେ,
ମୋହନ ବଂଶୀ ବିମ୍ବାଧରେ ବାଜେ । ୧ ।

ଉଙ୍କାର ଆଳପି ରାଗ ସଞ୍ଚାରେ,
ତେ ତେନାତେନାତେ ତାନ ଉଚ୍ଚାରେ ।
ତାନ ଭେଦ ତାଳ କପୋଳେ ହଏ,
ସଙ୍ଗୀତ ସ୍ୱରରେ ଗୋପିନୀ ଗାଏ । ୨ ।

କାମଜ ଛତଣ ସହସ୍ର ଲକ୍ଷେ,
ତନ୍ତ୍ରକ ଲକ୍ଷକ ସହସ୍ର ବଂଶେ,
ଅଠାଣି ସହସ୍ର ଫୁତ୍କାର ସାଜେ,
ଗୁଳଣି ସହସ୍ର ଚମ୍ପକ ବାଜେ । ୩ ।

ଧେଁକ୍ ଧେଁକ୍ ଥେଇ ଥେଇ ଦୁନ୍ଦୁଭି ଗାଜେ,
ଝିଙ୍ଗିଡ଼ି ଗିଡ଼ି ଗଡ଼ି ଥେଇ ଥେଇ ସାଜେ ।
ଝେଁ ଝଙ୍କ୍ ଝଙ୍କ ଝଙ୍କ ଝଞ୍ଜାଳ ଝାଙ୍କେ,
ଝେଁଗୁଣା ଝିଣା ଣଣା ଗୁଣିତ ଗୁଣାଙ୍କେ । ୪ ।

ଝମକ ଝମକ ତାଳେ ଝମକେ,
କଙ୍କିଣୀ ରୁଣ ଝଣ ଚଉ ଚମକେ ।
ଠଣ ରଣ ଘର୍ ଘଣ୍ଟ ଘଣ୍ଟୀରେ ନାଦେ,
ମୁଖରିତ ମଞ୍ଜୀର ପାଦେ ବିବାଦେ । ୫ ।

ଭେରୀ ମୃଦଙ୍ଗ ନାନା ବାଦ୍ୟ ନାଦେ,
ବ୍ରହ୍ମାଣ୍ଡ ପୂରି ବ୍ରହ୍ମଲୋକ ଭେଦେ ।
ଭୂମି ଭେଦ ତାଳ ପାତାଳେ ପଶେ,
କଣ୍ଠ ମେଳ ବାଦ୍ୟ ପଞ୍ଚମ ରସେ । ୬ ।

କୁହେଲ ଭ୍ରମର ସହସ୍ରେ ପଡ଼େ,
ଚନ୍ଦ୍ରଉଦଆ ଦାଉ ଦାଉ ଝଡ଼େ ।

ପୃଷ୍ଠର ଆଲଟ ସହସ୍ରେ ଚାଳ,
ସହସ୍ରେ ଫୁଲ ଛତ୍ର ଧରେ ତୋଳ । ୭ ।

ସହସ୍ରେ ଦର୍ପଣ ସମ୍ମୁଖରେ ଧରେ,
ମୁଖେ ମଧୁପାତ୍ର ତାମ୍ବୁଲ କରେ,
ଚନ୍ଦନ ମୃଦା କାହା କରେ ଶୋହେ,
ବିବିଧ ବନ୍ଧେ କୃଷ୍ଣମନ ମୋହେ । ୮ ।

ଗାଵନ୍ତି ବାବନ୍ତି ନୃତ୍ୟନ୍ତି ବାଲା,
ଉନ୍ମଦ ମଦନ-ଶରେ ବେଭୋଳା,
ଗତି ଭ୍ରାନ୍ତି ସୁରୁଷ ମାଧୁରୀ ସାଜେ,
ସୁର ଘୋର ଯୁଦ୍ଧ ଗାରମା ଗାଜେ । ୯ ।

ଝଲମଲ ଝଟକିତ ତାଟଙ୍କ ଗଣ୍ଡେ,
ବିଦ୍ୟୁତଖେଳା କି ଜୀମୂତ ମଣ୍ଡେ,
ରଙ୍ଗିମା ଅଧରେ ଭଙ୍ଗିମା ଗାଏ,
ଲୋଚନ ବଟକ କୃଷ୍ଣମୁଖ ସ୍ନେହେ । ୧୦ ।

ହେରି ଶ୍ରୀହରି ମୁଖ ପୂର୍ଣ୍ଣଚନ୍ଦ୍ର,
ଉଛୁଳି ଉଠେ ଗୋପୀ ପ୍ରେମସିନ୍ଧୁ,
କାଞ୍ଚୀଦାମ ତୁଟି କାଞ୍ଚଳି ଖସେ,
ଯୌବନ ହେରାଇ ତାଙ୍କନ୍ତି ବାସେ । ୧୧ ।

ପୁଣି ଖସଇ ପୁଣି ପୁଣି ଚାହିଁ,
ଯେମନ୍ତେ ଯୌବନ ଦରଶେ ହରିଙ୍କି,
କୃଷ୍ଣଙ୍କୁ ନ ସ୍ନେହି ସଖୀଙ୍କି ସ୍ନେହେ,
ଗୀତ ଭିତରେ ଅନୁଆନ କହେ । ୧୨ ।

ଚତୁର ଧରି ସଖୀମୁଖ ଚୁମ୍ବେ,
ନବଡ଼ ଗାଢ଼ କରି ପରିରମ୍ଭେ ।

କେହୁ ନିତମ୍ବତଟେ କର ଭରେ,
ବାସ ନୀବୀବନ୍ଧ ସଞ୍ଚିଲ କରେ । ୧୩ ।

କାହାର କାଞ୍ଚଲୀ କେ ଝିଙ୍କି ନଏ,
ଯୌବନେ ଯୌବନ ହାବୋଡ଼ି ଦଏ ।
ନିବିଡ଼ ଆଲିଙ୍ଗନେ ଭିଡ଼େ ହସ୍ତା,
କମ୍ପାଇ ଯୌବନ ଜଙ୍ଘନଦେହା । ୧୪ ।

ବାଞ୍ଛନ୍ତି ନାରୀ ହରି ପରିରମ୍ଭେ
ଜୀବନ ଯୌବନ ନ ରହେ ଦମ୍ଭେ ।
ଜର୍ଜରିତ ହୋଇ ଘୂର୍ଣ୍ଣି ରହେ,
ଲୋଚନ ଭେଦ କୃଷ୍ଣମୁଖ ଧ୍ୟାଏ । ୧୫ ।

ନୃତ୍ୟ ଗୀତ ଅନ୍ତ ଦେଖି ମୁରାରି,
ଜାଣିଲେ ମଦନେ ଉନ୍ମତ୍ତ ନାରୀ ।
ଗୋପୀ ଗୋଟିକେ କୃଷ୍ଣ ଗୋଟିଏକ
ଏ କରୁ ମୂର୍ତ୍ତି ହୋଇଲେ ଅନେକ । ୧୬ ।

ରାଧା ଚନ୍ଦ୍ରାବଳୀ ପାରୁଶେ ଦୁଇ,
ତାଙ୍କ ମଧ୍ୟରେ ଆଦ୍ୟ ରୂପ ରାଧା ।
ଯେତେକ ଗୋପୀ ତେତେ କୃଷ୍ଣ ବ୍ୟାପି
ଠାବେ ଠାବେ ଲୀଳା ଅନନ୍ତରୂପୀ । ୧୭ ।

ବିବିଧବନ୍ଧେ ପରିରମ୍ଭ ଲୀଳା,
ଶୃଙ୍ଗାରରସେ ଗୋପୀ କୃଷ୍ଣ ଖେଳା ।
ଏକେ ନ ଜାଣନ୍ତି ଆରେକ ଭେଦ,
ମୋ ବିନୁ କୃଷ୍ଣ ଆନ ନାହିଁ ଖେଦ । ୧୮ ।

ଅଷ୍ଟକମଳ ଅଷ୍ଟ ମଧ୍ୟଦଳେ,
କାଳୀର ଅଙ୍କ ହ୍ରଦଲତା କୂଳେ ।

ଚନ୍ଦନ ଗୁଲ୍ମ କୁସୁମ କାନନେ
ସକଳ ଗୋପୀ ଯେଣେ କେଳି କାନ୍ତେ । ୧୯ ।

ପଦ୍ମ ଦୁଇଦଳେ କୁଞ୍ଜ-କୁଟୀରେ
ରାଧା କୃଷ୍ଣ ଅଗ୍ନିକୋଣେ ବହୁରେ ।
ଜାଣି ଚରୁଣ ନରୋଧିଲ ସଙ୍ଗ
ନୃପନନ୍ଦନଙ୍କ ଦୃଷ୍ଟି ବରୋଧି । ୨୦ ।

ରାସ ଅଶେଷ ଅଭିଳାଷ ଲୀଳା,
ଏଥି ଭିତରେ କେତେ ଯୁଗ ଗଲା ।
ଗୋଟିଏ ଗୋଟିକେ ବୋଧ କରାଇ,
ଅନେକ କୃଷ୍ଣ ଏକ ମୂର୍ତ୍ତି ହୋଇ । ୨୧ ।

କୃଷ୍ଣଚରିତ ଏ ବବଧ ସ୍ତବ,
ଯାହା ନ ଜାଣେ ଧାତାନନ୍ତ ଶିବ ।
ମୋ ଗ୍ରୁର ପାମର କସ କହିବ,
ପିମ୍ପୁଡ଼ି ହୋଇ କି ସିନ୍ଧୁ ପିଇବ । ୨୨ ।

କିଛି ଜନ ମୋର କସ ବୁଦ୍ଧି
ଯହୁଁ କୃପା କଲେ କରୁଣାନିଧି ।
ତେଣୁ ସନ୍ଥଜନେ କହିଲି ଏତେ,
ବୋଲିବ ଦେବ ଶତ ମୋର କେତେ । ୨୩ ।

( ଗାହା ) ଇତି ଶ୍ରୀ ରହସ୍ୟମଞ୍ଜରୀ ଜନବଂଶ ଗ୍ରନ୍ଥେ,
ବବଧ ବନୋଦ ବଳାସ ଙ୍କିର୍ତ୍ତି ବନ୍ଧେ
ବଂଶ ଗ୍ରନ୍ଥ ବର୍ଣ୍ଣିନେ କେବଣ ସନ୍ତୋଷ
କହିବାକୁ ଆଜ୍ଞା ହୋଇ ଏଥିର ନର୍ଦ୍ଦେଶ ।



# ବଂଶୀ ଛାନ୍ଦ



ଘଗ ଭୈରବ—ଅଜବଳାପ ବାଣୀରେ ଗାଇବ ।

ଗୁପ୍ତ ରହସ୍ୟ ଅନ୍ତରେ କଥା
ଶୁଣି ରସିକ ରସପଣ୍ଡିତା,
ନୀପତରୁମୂଳେ ବଜେ ଗୋପୀନାଥ,
ବ୍ରଜବନ୍ଧୁ ବୃଷଭାନୁସୁତା; ହେ ସୁଜନେ । ୧ ।

ରାଧା ପଦ୍ମହସ୍ତେ ନାଗବଲ୍ଲୀ,
ହସ୍ତ କରେ ଶୋହେ ରତ୍ନ ଝରି,
ତାମ୍ବୂଳ ଭୁଞ୍ଜାଇ ମୁଖ ପଖାଳନ୍ତି,
ବେନି ପାରୁଶେ ବେନି ସୁନ୍ଦରୀ; ହେ ସୁଜନେ । ୨ ।

ବେଢ଼ି ସେବନ୍ତି ବରଜବାଳୀ,
କରେ କୁବେଳ ଚାମର ଢାଳି,
ପୁଷ୍କର ବାଞ୍ଛଣି ଧରି କେ ବାଞ୍ଛନ୍ତି,
କେହୁ ଫୁଲ ଛଡ଼ୀ ଧରେ ଭୋଳି; ହେ ସୁଜନେ । ୩ ।

ରାଧା ଚିବୁକ ଧରି ମୁରାରି,
କହୁଁ ବୋଲନ୍ତି ଶୁଣ ସୁନ୍ଦରି,
ଏବେ ତ ତୁମ୍ଭ ଆମ୍ଭ ମନ ପୂରିଲା,
ଅମ୍ଭେ ଯାଉଛୁ ଦ୍ୱାରକା ପୁରୀ; ଗୋ ସୁନ୍ଦରି । ୪ ।

ଆଉ ଅଲପ ଦିନର କଥା,
ମୃତ୍ୟୁପୁରରେ କି ଥିବା ସର୍ବଥା,
ଦନୁଜ ବିନାଶି ନିଜ ପୁରେ ଯିବା,
ବେଗେ ଉଶ୍ୱାସି ଅବନୀ ବ୍ୟଥା; ଗୋ ସୁନ୍ଦରି । ୫ ।

ତୁମ୍ଭେ କହୁଥିଲ ଏଥେ ଥାଅ,
ମୋତେ ନ ଦେଖି ବ୍ୟଥା ନ ପାଅ,
ଅନ୍ତରରେ ମୋର ତୁମ୍ଭ ତହିଁ ମନ,
ମୋତେ ଦ୍ୱାରକାକୁ ଆଜ୍ଞା ଦିଅ; ଗୋ ସୁନ୍ଦର । ୬ ।

ଏଣୁ ଚିହ୍ନ ବଂଶୀଟି ନିଅ,
ଗୋପ୍ୟେ ଶ୍ରୀକୃଷ୍ଣ ହସ୍ତେ ଦିଅ,
ବଂଶୀ ଥିଲେ ଆମ୍ଭେ ତୁମ୍ଭ ହସ୍ତେ ଅଛୁ,
ବଂଶୀ ତୁମ୍ଭ ଆମ୍ଭ ସଖୀ ସଙ୍ଗ; ଗୋ ସୁନ୍ଦର । ୭ ।

ଆଉ କଥାଏ ଶୁଣ ସୁନ୍ଦର,
ଯାହା ପଡ଼ିଲା ଦ୍ୱାରକାପୁର,
ଅନ୍ତରରେ ତୁମ୍ଭ ଘୁଣ ଘୁଣ୍ଣ ଘୁଣ୍ଣ,
ଆମ୍ଭ ଝଡ଼ିଗଲା ନିଜ ଶିଙ୍ଗ; ଗୋ ସୁନ୍ଦରୀ । ୮ ।

ସବୁ ସୁଖମାନ କଲୁ ତେଜ୍ୟା,
ଦିବ୍ୟ ପଲଙ୍କ ସୁପାତି ଶଯ୍ୟା,
ନଗ୍ର ନରନାରୀ ସମସ୍ତେ ଚକିତ,
କଥା ବାଜିଲା ରାଜା ପରଜା; ଗୋ ସୁନ୍ଦର । ୯ ।

କେହି ପଶୁର ତ ଶଙ୍କା ନାହିଁ,
ଏହିମତେ କେତେ ଗଲା ବହି,
ସମସ୍ତେ ହୋଇ ରୁକ୍ମିଣୀଙ୍କି ପେଷିଲେ,
କଥା ତଦନ୍ତ ପାଇବାପାଇଁ; ଗୋ ସୁନ୍ଦରୀ । ୧୦ ।

ନାନା ଉପାୟେ ପ୍ରକାରେ ଦେବୀ,
ବଲେ ପେଷିଲ ପଣି ପାଦେ ସେବ,
'ବହୁତ କୋଧ କରି ବାମା ବୋଇଲେ,
ନ କହିଲେ ଆଜ ମୁଁ ମରିବି ହେ ଗୋବିନ୍ଦ; ୧୧ ।

ବାଳୀ ମୂର୍ଖ୍ୟବ୍ରତ କଲେ ଯେଣୁ,
ତାଙ୍କୁ ନ କହୁ କହିଲୁ ତେଣୁ,
ବୋଇଲୁ ଅମ୍ଭେ ଏତେ ସର ହୋଇଲୁଁ,
ବ୍ରଜନାରୀ ଗୁଣ ଗୁଣି ଗୁଣି; ଗୋ ସୁନ୍ଦରୀ । ୧୨ ।

ଶୁଣି ସ୍ତମ୍ଭୀଭୂତ ହୋଇ ବାଳୀ,
ସମସ୍ତେ ହେଁ ହୋଇ କଲେ ମେଳ,
ଅମ୍ଭେ ସେ ଏତେ ଅସୁନ୍ଦର ହୋଇଲୁଁ,
ଏକା ସୁନ୍ଦର ଗୋପଗୁଆଳୀ; ହେ ଗୋବିନ୍ଦ । ୧୩ ।

ଶୁଂଭ ରୂପଗୁଣ ଉପଲକ୍ଷି,
ତାଙ୍କୁ ଛଳଣ କହିଲୁଁ ସଖି,
ଶୁଣି ସମସ୍ତେ ସର୍ବସୁଖ ତେଜିଲେ,
ବସି ସ୍ୱବନ୍ତ ଯେତେକ ଜର୍ମାଖୀ; ଗୋ ସୁନ୍ଦର । ୧୪ ।

ଏଥୁଁ ଅନ୍ତରେ ଗାଏଣୀ ଆସି,
ରୂପ ଗୁଣ ଗାଇଲେ ବିଶେଷି,
ତାଙ୍କ ତତ୍ତ୍ୱ ଶୁଣି ପରତେ ପାଇଲେ,
ମୋହେ ଢଳିଲେ ସର୍ବସୁକେଶୀ; ଗୋ ସୁନ୍ଦର ।୧୫ ।

ତତ୍ତ୍ୱ ବହୁତ ବର୍ଣ୍ଣତ ହୋଇ,
ଆମ୍ଭ ଗ୍ରାମରେ ସର୍ବ ଜଣାଇ,
ବୋଇଲେ ଆମ୍ଭଙ୍କୁ ଅନୁଗ୍ରହ କର,
ତାଙ୍କ ଶ୍ରୀମୁଖ ବାରେ ଦେଖାଇ; ହେ ଗୋବିନ୍ଦ । ୧୬ ।

ତାଙ୍କ ସାରୂପ୍ୟ ଶରଧା ଶୁଣି,
ଆମ୍ଭେ ଘେନ ଆସିଅଛୁ ପୁଣି,
ମନ ଜାଣି ତାଙ୍କୁ ଅନୁଗ୍ରହ କର,
ତୁମ୍ଭେ ପ୍ରସନ୍ନ ହୁଅ ତରୁଣୀ; ଗୋ ସୁନ୍ଦର । ୧୭ ।

ରାଧା ବୋଇଲେ ସେ କାହିଁ ଛନ୍ତି,
ପ୍ରଭୁ ବୋଇଲେ ଗଗନଗତି,
ଏକ ସଙ୍ଗ ହୋଇ ସମସ୍ତେ ଅଇଲୁ,
ବନ୍ଧୁ ଅଛିଲ ଏ ଖଗପତେ ଗୋ ସୁନ୍ଦରି । ୧୮ ।

ଶୁଣି ସମସ୍ତେ ଚକିତ ହୋଇ,
ବାଲୀ ଗଗନକୁ ଦେଲେ ବୁହିଁ ।
ଜାଣି ଗରୁଡ଼ ଉଡ଼ି ଆସି ବସିଣ,
ରାଧା ଶ୍ରୀଚରଣେ ପ୍ରଣମଇଁ ସେ ଗରୁଡ଼ । ୧୯ ।

ବାମା ଓହ୍ଲାଇ ପଡ଼ି ପୃଷ୍ଠରୁ,
ଦଣ୍ଡଥାଇ ପ୍ରଣମିଲେ ଦୂରୁ,
ଖଗପତି ପିଠି ଆଉଁଶି ରାଧିକା,
ତାକୁ ବୋଇଲେ ତୁ ମହାମେରୁ, ହୋ ଗରୁଡ଼ । ୨୦ ।

ତୋତେ ଦେଖିଲି ଆଜ ମୋ ଧନ୍ୟ,
ଯାହା ଶୁଣିଥିଲି ବେଦ କର୍ଣ୍ଣ,
ଲୁଚି ହୋଇ ଦିଶ ଉଠ ମୋର ବାପ,
ଉଠ ଉଠ ତୁ କୃଷ୍ଣବାହାନ ହେ ଗରୁଡ଼ । ୨୧ ।

ରାଧା ଗରୁଡ଼କୁ ତୋଳି ଧରି,
କୃଷ୍ଣ ବାମେ ରହିଲେ ଈଶ୍ୱରୀ,
ଦେଖିଲେ ଦୂରେ ଦର୍ଶନ କରୁଛନ୍ତି,
ଭୂମି ଲୋଟିଣ ରାଜକୁମାରୀଙ୍କୁ ହେ ସୁଜନେ । ୨୨ ।

ରାଧା ବୋଇଲେ ଉଠ ଗୋ ମିତ୍ର,
ଲୁଚି ହୋଇଦିଶ ପ୍ରାଣମିତ୍ର,
ଶୀଘ୍ର ହୋଇ ଉଠି ଆସ ନବଧନ,
ମୋର ପ୍ରାଣର ଶ୍ରେତ-ସଦା'ନ୍ତ ଗୋ ସଜନୀ । ୨୩ ।

ରାଧା ବଚନ ଅମୃତ ଶୁଣି,
ଅଙ୍ଗ ପୁଲକେ ସବୁତରୁଣୀ
ଭସ୍ମ ସବୁ ଛାଡ଼ି ଉଠି ଉଭାରଲେ,
ସର୍ବେ ଶିରେ ଦେଇ ବେନିପାଣି; ହେ ସୁଜନେ । ୧୪ ।

ରାଧା ଲାବଣ୍ୟ ବଦନ ଦେଖି,
ଭାବେ ଜଡ଼ିଲେ ସବୁ ସୁମୁଖୀ,
ଲବଙ୍ଗପିଉଲୀ ପ୍ରାସ୍ତେ ହୋଇଛନ୍ତି,
ଜଳେ ଢଳହଳ ବେନି ଅଖି; ହୋ ସୁଜନେ । ୧୫ ।

ରାଧା ବୋଇଲେ ଆଜ ମୋ ଧନ୍ୟ,
ମୁହୁଁ ଦେଖିଲି ତୁମ୍ଭ ବଦନ,
ମନ ଜାଣି ଆଣି ଭେଟ କରାଇଲେ,
ପ୍ରଭୁ କୃପାସିନ୍ଧୁ ଭଗବାନ; ଗୋ ମିତଣି । ୧୬ ।

ତୁମ୍ଭେ ଜଗନ୍ନାଥଙ୍କ ଭାବନୀ,
ତୁମ୍ଭେ ଯେ ଜଗଜନଜନନୀ,
ପ୍ରଭୁଙ୍କ କଥାଟି ତୁମ୍ଭଙ୍କ ଲାଗଇ,
ଅଉ କେବେହେଁ ନୋହୁବ ମାନୀ; ଗୋ ମିତଣି । ୧୭ ।

ପ୍ରଭୁ ମନ ଜାଣି ସେବାଥିବ,
ସବୁ ସଖୀ ହୋଇ ଏକଭାବ,
ସଦା ଆନନ୍ଦେ ଦିନକାଳ ହରିବ,
ପ୍ରଭୁ ଯେମନ୍ତେ କଷ୍ଟ ନୋହୁବ, ଗୋ ମିତଣି । ୧୮ ।

ଏତେ କହୁ ଅନଥନ ଆଖି,
ବେଢ଼ି ହୋଇଧ ଗଦଗଦ ସଖୀ,
ତତକ୍ଷଣେ ଅଞ୍ଚଳେ ଲୋତକ ପୋଛୁଣ,
ଶୋକ ସମ୍ଭାଳିଲେ ଚନ୍ଦ୍ରମୁଖୀ; ହେ ସୁଜନେ । ୧୯ ।

'ଦେଖି ରୁକ୍ମିଣୀ ସଖୀଙ୍କ ଠାର,
ଆଗେ ସେବଲେ ଶ୍ୟାମର ଧର,
ଯେ ଯାହା ସେବାଆୟୁଧ କରେ ଘେନ,
ସେବା ଖଟିଲେ ରାଜକୁମାରୀ; ହେ ସୁଜନେ । ୩୦

ଶୁଣି ବୋଲେ ଶ୍ରୀଘୁଙ୍କକୁମାରୀ,
ତୁମ୍ଭେ ଆମ୍ଭଙ୍କ ପ୍ରଭୁ ଦୋସର,
ଆମ୍ଭ ଘର ନିରବଧି ଅପରାଧୀ,
ତୁମ୍ଭ ପାଦକୁ ନୋହୁ ଯେ ପର; ଗୋ ଈଶ୍ୱର ।

ତୁମ୍ଭେ ଠାକୁରାଣୀ-ପଣେ ବଡ଼
ଆମ୍ଭେମାନେ ଭବବୃକ୍ଷ ଜଡ଼,
ତୁମ୍ଭ ପ୍ରଭୁ ଭାବ ଆମ୍ଭେ କି ଜାଣିମୁଁ,
ଆମ୍ଭ ହୃଦୟ ନୁହଇ ଦୃଢ଼; ଗୋ ଈଶ୍ୱର । ୩୨ ।

ତୁମ୍ଭ ପ୍ରସନ୍ନେ ଏଣିକି ଅବା
ଦେଖି ଯାଉଛୁଁ ଜାଣିମୁଁ ସେବା,
ଯହୁଁ ଥିଲେ ଆମ୍ଭେ ତୁମ୍ଭ ପରବୃନ୍ଦ,
ଆମ୍ଭ ଅପ୍ରାଧ କ୍ଷମା କରିବା; ଗୋ ଈଶ୍ୱର । ୩୩ ।

ଏତେ କହିଣ ଚରଣ ଧରି,
ରାଧାପାଦେ ନମିଲେ ସୁନ୍ଦରୀ,
ତୋଳି କୋଳ କରି ହାତ ଧରି ନେଇ,
ରାଧା ସମର୍ପି ଦେଲେ ମୁରାରି; ହେ ସୁଜନେ । ୩୪ ।

ମୋର ପ୍ରାଣେ ଏହାଙ୍କୁ ଦେଖିବ,
ଦୋଷ କଲେ ତାହା ଉପେକ୍ଷିବ,
ଆଉ ଯେତେ ନାରୀ ସବୁ ସମ କରି,
ପ୍ରଭୁ ଏହାଙ୍କ ସଙ୍ଗେ ଲେଖିବ; ହେ ଗୋବିନ୍ଦ ।। ୩୫ ।

ଅନ୍ୟ ଜନ୍ମଖୀ ଗୋପୀଙ୍କ କଥା,
ପ୍ରଭୁ ମନ୍ଦନ ଛାଡ଼ିବ ଚନ୍ତା,
ଦୋଫଲୁ ହଚଚ ଯାହା ବନ୍ଧିଅଛ,
ତାହା କେ କରିପାରେ ଅନ୍ୟଥା; ହେ ଗୋବିନ୍ଦ ।

ଏତେ ବନ୍ଧୁ କଥା ଗର୍ବେ ଭର,
ବାହ୍ୟେ ହରଷ ଆରମ୍ଭ କର,
ପକ୍ଷିବର ଯାସ୍ୱେ ପାଶ୍ବେଟି ଅଇଲେ,
ରାଧାସଙ୍ଗେ ଘେନ ବ୍ରଜନାରୀ; ସୁଜନେ ।

କେହି ବୋଲନ୍ତି ସକଳ ଗୋପୀ,
ବାରୁ ଗରୁଡ ଏ ବଡ ତପୀ,
ପକ୍ଷୀରୂପ ଧରି ପ୍ରଭୁଙ୍କ ବିଶ୍ୱାସ,
ଯେସନେ ରାମଚନ୍ଦ୍ର ହନୁ କପି; ଗୋ ସଜନ । ୩୮ ।

କେହି ବୋଲନ୍ତି ଏ ଥିଲା କାହିଁ,
ଏ ତ ଏତେକ ଅଣିଛି ବନ୍ଧୁ,
ରୂପ ଗୋପ୍ୟ କରି ସାମାନ୍ୟ ଦଶୁଛି,
ଦେଖ ବସିଛି ମଉନ ହୋଇ; ଗୋ ସଜନ । ୩୯ ।

କଥା କହଇ କେମନ୍ତ କରି,
ଶୁଣି ନ ପାରଲୁଁ ଗୋପନାରୀ,
କାଜ କାଲ ପ୍ରାପ୍ତେ ହୋଇ ବସିଅଛି,
ଯେସନେ ଯୋଗଇନ୍ଦ୍ର ଧ୍ୟାନ ଧରି; ଗୋ ସଜନ । ୪୦ ।

ଦେଖ ଦେଖ ଗୋ ସୁନ୍ଦର ତୋଳା,
କି ଏ ମାଣିକ୍ୟ ରଙ୍ଗ ପୋଷୁଲା,
ଅଧର ସୁନ୍ଦର ଅରୁଣ ରେଖା କି,
ବାଳ କସ୍ତୁରୀ କଣ୍ଠାର କଳା; ଗୋ ସଜନ । ୪୧ ।

ଦେଖ ସୁନ୍ଦର ଏ ଉଚ୍ଚ ନାକ,
ଦନ୍ତା କାଣ୍ଡର ପ୍ରାୟେ ଝଲକ,
ନାକତଳେ ନଥ ମୋତି ଦେଇଅଛୁ,
ଏତ ଛବିଙ୍କ ଉପରେ ଟେକୁଛ ଗୋ ସଜନ । ୪୨ ।

ଦେଖ ଦେଖ ଗୋ ସୁନ୍ଦର ଗଳା,
ସେ ତ କମ୍ବୁର ପ୍ରାୟେ ଧବଳା,
ଏତେ ବୋଲି ଗୋପୀ ଗ୍ରୀବା ପାଇ ଅତ,
ସବେ ଲମ୍ବାଇଲେ ପୁଷ୍ପମାଳାକୁ ଗୋ ସଜନ । ୪୩ ।

ତୁ ଯେ ପ୍ରଭୁଙ୍କ ସ୍ଥମ୍ରେ ଆଜ,
ଦେବ-ସୁଧାରମ୍ଭନ କଣାଉ,
ଥରେ ଥରେ ଆମ୍ଭ କଥା କଣାଇବୁ,
ତୋର ଧର କହୁଅଛୁଁ ପାଉଁ ହେ ଗରୁଡ଼ । ୪୪ ।

ଶୁଣି ଗରୁଡ଼ ନୁଆଁଇ ମଥା,
ଆଣି ବୂଜ ନ କହିଲ କଥା,
ଗୋପୀଙ୍କି ଉପେକ୍ଷି ଦିବାକୁ ଗୋବିନ୍ଦ,
ପ୍ରଭୁ ହୃଦଷଦ୍ୱେ ବଡ ବ୍ୟଥାକୁ ହେ ଦଇବ । ୪୫ ।

ରାଧାମୁଖ ଚୁମ୍ବି ହୃଷୀକେଶି,
ଯାଇଁ ଗରୁଡ଼ ପୃଷ୍ଠରେ ବସି,
ରାଧାଙ୍କ ଆଜ୍ଞା ମାଗି ରାଜକୁମର,
ସବେ ଆପନେ ବସିଲେ ଅଧି ହେ ସୁଜନେ । ୪୬ ।
ଗୋପୀ ବୃନ୍ଦ ବୃନ୍ଦ ଖଗପତ,
ଉଡ଼ି ଗଲାକ ଗଗନ ପଥ,
ପଲକ ନ ପଡ଼ୁ ଦ୍ୱାରକା ମିଳିଲା,
ଆସି ପ୍ରସର ହୋଇଲା ରାତ୍ରୀ ହେ ସୁଜନେ । ୪୭ ।

ଜାଣି ତାମ୍ବୁଳ ଦେଲା ରଙ୍ଗ
ପ୍ରଭୁ ପଲଙ୍କେ ଛଣେ ପହୁଡ଼
ଅନ୍ତଃପୁରେ ସବୁ ରାଣୀ ପହୁଡ଼ିଲେ,
ଗଲ ଗରୁଡ଼ ପୁରକୁ ଉଡ଼ି; ହେ ସୁଜନେ । ୪୮ ।

ରାଜ ନ ପାନ୍ତି ଉଠି ଶ୍ରୀହରି,
ପ୍ରଭୁ ନିତ୍ୟକର୍ମମାନ ସାରି,
ମର୍ଦ୍ଦନ ସ୍ନାହାନ ଅମୃତ ଭୋଜନ,
ପ୍ରଭୁ ତାମ୍ବୁଳ ଭୋଜନ କରି; ହେ ସୁଜନେ ॥

ପ୍ରଭୁ ରତ୍ନସିଂହାସନେ ବସେ,
ସଭାମଣ୍ଡଳମଧ୍ୟେ ବସିଲେ,
ଯାନ ଦେବ ସର୍ବ ଦୁଃଖ ଜଣାଇଲା,
ମୋତେ ରକ୍ଷା କର ଦେବରାଜେ; ହେ ଗୋବିନ୍ଦ ॥

ଗାହା—ଇତି ଶ୍ରୀ ରହସ୍ୟମଞ୍ଜରୀ ବିଂଶ ଛାନ୍ଦେ;
ସର୍ବ ସଂବୋଧ ବାଞ୍ଛାପୂର୍ଣ୍ଣ ବନ୍ଦେ,
ଏକବିଂଶ ଛାନ୍ଦ ବର୍ଣ୍ଣିନେ କେବଣ କେବଣବୋଧ,
କହିବାକୁ ଅଜ୍ଞା ହୋଇ ଏଥିର ଯେ ପ୍ରବନ୍ଧ । ୫୦ ।



## ଏକବିଂଶ ଛାନ୍ଦ



ବଙ୍ଗଗୁଣ୍ଡକେଶ—ବାଣ ଭୈରବ

ଏଥୁ ଅନନ୍ତରେ ଶୁଣ ଅପୂର୍ବରସ ହେ
ଅନ୍ତେଶ୍ୱର ପୁରେ ମହାଦେବୀ ।
ନିତ୍ୟକର୍ମ ଆଦି କରି ଯେ ବସି ବିଧାନ ହେ
ନିଯୋଗ ବନ୍ଧଧରିବେ ଦେବ । କ ସନ୍ତହେ ॥

ସ୍ୱେଜନ ଶତ୍ରୁକ ଅନ୍ୟ ଗୀତ

ଏମନ୍ତେ କେତେହେଁ ଦିନ ଅବସାନ ଗଲା ହେ
ଗୋବିନ୍ଦ ଭଜନ୍ତେ ଏକ ଚିତ୍ତ । ୧ ।

ଦ୍ୱଧମଣୀମଧ୍ୟରେ ସୁବର୍ଣ୍ଣପଲଙ୍କେ ହେ
ବମନେ ରୁକ୍ମିଣୀ ଥିଲେ ଶୋଇ ।
ଶ୍ରୀହରି ପଲଙ୍କେ ବସି ଦେହେ କର ଦେଲେ ହେ
ଉଠି ଦେବୀ ଚଳେ ଭୟ ହୋଇ । କି ପ୍ରଭୁ ହେ ।
କି କାର୍ଯ୍ୟେ ଅଇଲ ମୋତେ କହ ।
ତୁମ୍ଭେ ସର୍ବେଶ୍ୱର ଆମ୍ଭେ ମାନବୀ ମାତର ହେ ।
କି କାରଣେ ଛୁଁଅ ଆମ୍ଭ ଦେହ । ୨ ।

ଅଛୁ ଅଜ୍ଞଜନ ଆମ୍ଭେ ଅଯୋଗ୍ୟ ଯୁବତୀ ହେ
ହସ୍ତଅଗ୍ରେ ଛୁଇଁ ନ ଯୋଗାଇ ॥
ଆମ୍ଭେ ମହାପାପୀ ପୂର୍ବେ ତପ କରି ନାହୁଁ ହେ
ଶ୍ରୀଅଙ୍ଗ ଛୁଇଁବୁ ଅବା କାହୁଁ । କି ପ୍ରଭୁ ହେ ।
ଆମ୍ଭେ ନୀଚ ଜବନ୍ତ ନଲୁଚ୍ଛ ।
ପ୍ରଭୁମାନଙ୍କର ଏହୁ ଅଛି ଅବେକ୍ଷର ହେ
ଉଚ୍ଚ ତେଜ ନୀଚନାଶି ଇଚ୍ଛ । ୩ ।

ପୁଣ୍ୟରେ ମିଶଇ ପୁଣ୍ୟ ପାପେ ନ ମିଶଇ ହେ
ପାପ ଲାଗି ପୁଣ୍ୟ ହୋଇସ୍ତେ ଖୀନ ॥
ଅଜ୍ଞବ ଯୁବତୀ ସଙ୍ଗେ ସ୍ନେହ ବଢାଇଲେ ହେ
ଅପାଙ୍ଗ ସଙ୍ଗତେ ଯଶ ମ୍ଳାନ । କି ପ୍ରଭୁ ହେ ।
କି ବିଚାରି ଅଇଲ ମୋ ପାଶ
ଅଳଗ ସେବକା ଆମ୍ଭେ ଦୂରଗେ ସେବିବୁ ହେ
ନ ଛୁଇଁବୁ ନିଜ ଶ୍ରେୟ ବାସ । ୪ ।

---

୧—୬ ଦିନ ଅବସ୍ଥାରେ ଗଲା ( ଗ ) । ୨—୩ ଦେହ ଆଉଁଶିଲେ । (ଘ) ।

ନ ଜାଣି ଅଜ୍ଞାନେ ପଡ଼ି ଦୃଷ୍ଟି କରିଥିଲୁ ହେ
ତୁମ୍ଭେ ହେ ଉପ୍ରୋଧେ ନେଇଥିଲ ।
ଆମ୍ଭର ଅପ୍ରାଧ ଦେଖି ଝିଣ୍ଟି ପକାଇଲ ହେ
ଯେନ୍ତୁ ଯେତେ ତେତେକେ ରଖିଲ । କି ପ୍ରଭୁ ହେ ।
ଭଲ କଲ ରକ୍ଷିଲ ଆମ୍ଭର
ସହଜେ ଯାନଲୋକଙ୍କୁ ବଳପଣ ଦେଲେ ହେ
ନ ରଖଇ ପ୍ରଭୁଙ୍କ ବେଭାର । ୫ ।

ଏତେ ବୋଲି ମହାସତୀ ଗଦଗଦ ହୋଇ ହେ
ଶୋକେ କହି ନ ପାରନ୍ତି ବାଣୀ ।
ଲୋଚନୁ ଲୋତକ ଦେଖି ଥୋପା ଥୋପା ପଡ଼େ ହେ
ଦେଖି କୋଳ କଲେ ଚକ୍ରପାଣି । କି ସନ୍ତ ହେ ।
ପଲଙ୍କେ ବସାଇ ଶୁଭ୍ରକେଶୀ ।
ଚଞ୍ଚଳେ ଲୋତକ ପୋଛି ହୃଦରେ ଭିଡ଼ିଣ ହେ
ମୁଖ ଚୁମ୍ବି କହନ୍ତି ଆଶ୍ୱାସି । ୬ ।

ସୁବୋଧ ସମ୍ଭାଳ ତୁମ୍ଭେ ଶୁଣ ପ୍ରାଣପ୍ରିୟେ ଗୋ
ତୁମ୍ଭେ ଅଟ ସୁବର୍ଣ୍ଣ ରତନ ।
ରୂପ ଗୁଣ ବୁଦ୍ଧି ଶୁଦ୍ଧି ଆମ୍ଭର ବଂଶରେ ଗୋ
ସର୍ବଗୁଣେ ସର୍ବଦା ସମ୍ପୂର୍ଣ୍ଣ । କି ସଖି ଗୋ ।
ତୁମ୍ଭେ ସର୍ବବ୍ରହ୍ମାଣ୍ଡମଣ୍ଡନୀ ।
ତ୍ରିଭୁବନ-ଜନମନ ଆନନ୍ଦଦାୟିନୀ ଗୋ
ସର୍ବ-ଦୁଃଖ-ଦାରିଦ୍ର୍ୟଖଣ୍ଡନୀ । ୭ ।

ଆମ୍ଭେ ନାରାୟଣ ଅଟୁ ତୁମ୍ଭେ ନାରାୟଣୀ ଗୋ
ଆମ୍ଭେ ବ୍ରହ୍ମା ତୁମ୍ଭେ ବ୍ରହ୍ମାୟଣୀ ।
ଆମ୍ଭେ ରୁଦ୍ର ଅବତାର ତୁମ୍ଭେ ରୁଦ୍ରାୟଣୀ ଗୋ
ସର୍ବଭୂତେ ତୁମ୍ଭେ ବିହାରିଣୀ । କି ସଖି ଗୋ ।

ତୁମ୍ଭେ ଅଷ୍ଟ ସିଦ୍ଧି ପୂରୁଷଶ୍ୱରୀ ।
ଦଶଅବତାର ଆମ୍ଭେ ଭୂଜ୍ୟୋଛଲେ ଧରି ଗୋ
ତୁମ୍ଭେ ଲକ୍ଷ୍ମୀରୂପେ ମନୋହାରୀ । ୮ ।

ତୁମ୍ଭ ଆମ୍ଭ ସାଧା ତନ ଭିନ୍ନାଭିନ୍ନ ନାହିଁ ଗୋ
ରତ ପ୍ରୀତ ଶ୍ରୁତ ଏକ ଦେହ ।
ତୁମ୍ଭେ ରତ ସାଧା ପ୍ରୀତ ଅମ୍ଭେ ଶ୍ରୁତ ଜାଣ ଗୋ
ଏଥେ କାହିଁ ଅଛଇ ସନ୍ଦେହ । କ ସଖି ଗୋ ।
ତନ ସୁଖ ଆତ୍ମାକୁ ପ୍ରବେଶ ।
ଶ୍ରୁତରୁ ଜନମ ପ୍ରୀତ ପୀରତରୁ ରତ ଗୋ
ରତଠାରେ ପୁନ ସଙ୍ଗମ । ୯ ।

ଜୀବ ପରମ ପ୍ରକୃତ ଏକ ଦେହେ ସ୍ଥିତ ଗୋ
ଲୀଳା ଅର୍ଥେ ଭିନ୍ନ ଜନ୍ମ ଯେଣୁ ।
ଏ ମୋହ ସଂସାରେ ପଡ଼ି ଅଜ୍ଞାନ ହୋଇଲ ଗୋ
ତୁମ୍ଭଙ୍କୁ ନ ଜାଣ ତୁମ୍ଭେ ତେଣୁ । କ ସଖି ଗୋ ।
ଗ୍ଲାନ୍ତ ଏବେ ବିଅର୍ଥ ସନ୍ତାପ ।
ଇହ ଜ୍ଞାନ ତେଜ ପ୍ରିୟେ ପରମକୁ ଚେତ ଗୋ
ତୁଟୁ ସବୁ ମାୟା ମୋହ ତାପ । ୧୦ ।

ରୁକ୍ମିଣୀ ବୋଇଲେ ପ୍ରଭୁ ଅଜ୍ଞାନର ଜ୍ଞାନ ହେ !
ଅଚେତର ଚେତନା ପୁରୁଷ ।
ଯେତେ କହୁଅଛ ପ୍ରଭୁ ତେତେ ମୁଁ ବୁଝୁଇ ହେ
ତେଣୁ ମୋର ଭ୍ରାନ୍ତି ଯେ ବିଶେଷ । କ ପ୍ରଭୁ ହେ ।
ଅଧିକ ମୁଁ କହୁ ନାହିଁ ଆନ ।
ତୁମ୍ଭ ଆମ୍ଭ ସାଧା କାହିଁ କେମନ୍ତ ପ୍ରମାଣ ହେ
ଦେଖାଇବ ମୋତେ ମୂଳ ସ୍ଥାନ ୧୧ ।

ଶ୍ରୀହରି ବୋଇଲେ ସଖି ଦୁର୍ଗମ କହିଲ ଗୋ
ନିଗୂଢ଼ ପରମ ପ୍ରେମଧାମ ।
ନଷ୍ଟ ପ୍ରାପ୍ତେକ ସଖି ଖସିବା ନିଶ୍ରମ ଗୋ
ପାଉଛି ବସିବା ଅତି ଶ୍ରମ । ଏ ସଖି ଗୋ ।
ଅସିବା ନିକଟ, ସିବା ଦୂର ।
ଅନେକ ଜନମ ସାଧି ସଂସିଦ୍ଧ ହୋଇଲେ ଗୋ
ତେବେ ଲଭି ପାରି ସେହୁ ପୁର । ୧୨ ।

ବିନା ଯନ୍ତ୍ର ମନ୍ତ୍ର ଭେଦ ନ ଜାଣି କି ସିଦ୍ଧ ଗୋ
ବିନା ଗୁରୁ କୃପାରୁ କି ପାଇ
ତଥି ଉପଦେଶ ଗୁରୁ ନିପୁଣ ସୁନ୍ଦରୀ ଗୋ
ଚତୁର୍ଦ୍ଦଶ ପ୍ରମାଣେ ତା କହି । ଏ ସଖି ଗୋ ।
ତାଙ୍କ ଯାଇ ଯାଇ ପାରି ଯେବେ ।
ଯନ୍ତ୍ର ମନ୍ତ୍ର ସବୁ ଭେଦ ସେ ଯେବେ କହିବେ
ସିଦ୍ଧ କଲେ ଲଭି ପାରି ତେବେ । ୧୩ ।

ସୁର ମହେଶ୍ୱର ବ୍ରହ୍ମା ଅନନ୍ତ କୋଟି କୋଟି ଗୋ
ତାଙ୍କପାଏ ଯାଏ ତ ନ ପାରି
ଅଶେଷ ଦୁର୍ଗମ ପଥ ନିଗମେ ଅଗମ୍ୟ ଗୋ
ଭେଦ ଶକ୍ୟ ନୋହଇ କାହାରି । ଏ ସଖି ଗୋ ।
ଯେବେ ତୁମ୍ଭେ ଦୃଢ଼ କଲ ମନେ ।
ପାରି କି ନ ପାରି ସଖି ଗମନ କରିବା ଗୋ
ସତ୍ୟ କରି କହୁଛୁଁ ବଚନେ । ୧୪ ।

ଛାଡ଼ ଏବେ ଗୁହ୍ୟ ପ୍ରିୟେ ହସି କଥା କହ ଗୋ
ରଙ୍କ-ଚନ୍ଦ୍ର ମୟୂଖ ପ୍ରକାଶୁ ।
ସୁରତଘୋର ଅନ୍ଧକାର ଧର୍ମର ବିନାଶୁ ଗୋ
ସଂକୁଚେଣ ପିକ ଝାଡେ ଝାସୁ । ଏ ସଖି ଗୋ ।

୧୫—୪ :— ପିକ ବୃକ୍ଷେ ବସୁ: ପଣ୍ଣୁ ( କ, ଖ, ) ।

ଶୁଣ ହର ଅମ୍ବର ଉପେଖ ।
ଅଦତ୍ତ ହୃଦସ୍ଥ ମୋର ଭକ୍ତି କର ଦତ୍ତ ଗୋ
ବଦନ ଚୁମ୍ବିଣ ପ୍ରାଣ ରଖ । ୧୫ ।
ଶୁଣି ଶଶିମୁଖୀ ମନେ ମନହିଁକବୋଧେ ହେ
ବେଳୁ ବେଳ ବଢ଼ିଲା ଉଲ୍ଲାସ ।
ଲକ୍ଷ୍ମୀନାରାୟଣ ସୁଖସମ୍ଭୋଗେ ମଜ୍ଜିଲେ ହେ
କହେ ଦେବକୁଳ ଭବେ ଦାସ । କ ପନ୍ଥ ହେ ।
ଶ୍ରୀହରିମହିମା ଅଗୋଚର ।
ଯଦ୍ୟପି କହୁ ଲେଉଟିଲେ ଶକ୍ୟଣ୍ଟି କାହାର ହେ
ବାହୁଲେ କ ତରଇ ସାଗର । ୧୬ ।

ଗାହା:—ଇତି ଶ୍ରୀ ବୃହତ୍ପାମନ୍ତ୍ରସ୍ୟ ଏକବିଂଶ ଛନ୍ଦେ ।
କାନ୍ତରତଗମନେ କାନ୍ତାଅଭିମାନ ବନ୍ଧେ ।
ଦ୍ୱାବିଂଶଗ୍ରନ୍ଥ ବର୍ଣ୍ଣିନେ କେବଣ ଜ୍ଞାନ ।
କହିବାକୁ ଅଶକ୍ୟ ହୋଇ ପରମ ଅଗମ୍ୟ ଗ୍ୟାନ । ୨୧ ।



## ଦ୍ୱାବିଂଶ ଛାନ୍ଦ ।



ସଙ୍ଗମନ୍ତଅଧ୍ୟା ବାଣୀରେ ଗାଇବ ।

ଜୟ ଜୟ କୃଷ୍ଣପ୍ରିୟା ରୁକ୍ମିଣୀ ନାମ
ସୁନ୍ଦରପଣେ ଲକ୍ଷ କ ଦେବା ସମ । ୧ ।
ଶ୍ରୀକୃଷ୍ଣରମଣୀ ଯେହୁ କାମର ମାତ
ଯାହାର ପ୍ରକୃତିଅଂଶୁଁ ଅଶେଷ ଜାତ । ୨ ।
ସଂହାରଣୀ ପାଳଣୀ ଧାରଣୀ ସଂସାର
ପ୍ରକୃତିକାରଣୀ ସବୁଙ୍କେ ଉଦ୍ଧାର । ୩ ।

ଗଙ୍ଗା ଗୟା ଗୋଦାବରୀ ତୀର୍ଥ ସରୂପୀ
ଭଗତ କାରଣେ ଦେବୀ ଜଗତେ ବ୍ୟାପି । ୪ ।

ଲୀଳା ଅର୍ଥେ ଏକ ରୂପ ଅନେକ ହୋଇ
ପ୍ରଭୁ ଠାକୁରାଣୀ ବିନୁ ଅଧିକ କାହିଁ । ୫ ।

ମୋ ଛାର କସ କହିବ ତୁମ୍ଭ ମହିମା
ଦୁରିତନାଶିନୀ ଦୋଷ କର ମୋ କ୍ଷମା । ୬ ।

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜନ
ପରମ ରହସ୍ୟ ରସ ନାଟ୍ୟ ଆଖ୍ୟାନ । ୭ ।

ଗରୁଡ଼ ହକାର ପ୍ରଭୁ ଶ୍ରୀ ଜଗନ୍ନାଥ
ରୁକ୍ମିଣୀ ଦେଖଣେ ବଳେ ପରମ ପଥ । ୮ ।

ବ୍ରହ୍ମାଣ୍ଡ-ଅଣ୍ଡ-କଟାହ ବଳଣ ପାଇଁ
ବାସୁଦେବ ଆଳ ଜଳବୈକୁଣ୍ଠେ ହୋଇ । ୯ ।

ବୋଲନ୍ତ ଶ୍ରୀହରିପ୍ରିୟା ଶୁଣ ଗୋ ତୁମ୍ଭେ
ଏ ପୁରେ ରୁକ୍ମିଣୀ ବାସୁଦେବଙ୍କ ଅମ୍ଭେ । ୧୦ ।

କାହିଁ କାହିଁ ଜଳମୟ ପୁର ଜିଣିଲେ
ଅନଳମୟ ଭୁବନେ ଯାଇଁ ମିଳିଲେ । ୧୧ ।

ଅଗ୍ନି ତେଜ ଦେଖି ଭୟ କଲେ ରୁକ୍ମିଣୀ
ହୃଦରେ ରଖିଲେ ଭିଡ଼ି ଶାରଙ୍ଗପାଣି । ୧୨ ।

ଜଳନ୍ତା ଅନଳେ ଝାସି ଗରୁଡ଼ ଚଳି
ଅନେକ ଯୋଜନ ଅଗ୍ନି ଗଲା ନଇଲି । ୧୩ ।

ବହୁତ ବସ୍ତାର ଝର୍ଘ ଗଗନ ପନ୍ଥ
ଜିଣିଲା ବଡ଼ଶଗଡ କଶ୍ୟପସୁତ । ୧୪ ।

ସେଠାରୁ ତେଣିକି ଅନ୍ଧକାର ଭୁବନ
ନାକ ଅଙ୍ଗ ନ ଦିଶଇ ପଦ୍ମକେ ଶୂନ୍ୟ । ୧୫ ।

ମହାଭୟ ଉପୁଜିଲା ଶ୍ରୀହରିପ୍ରିୟା
ଦରଣ୍ଡି ଭକ୍ତିଲେ ଦେବୀ ଗୋବିନ୍ଦ ହୃଦୟା । ୧୬ ।

ସୁଦର୍ଶନ ଚକ୍ର ପେନ୍ନ ଶ୍ରୀ ବନମାଳ
ତର୍ଜନୀ ଅଙ୍ଗୁଳି ଭରି ବୁଲାନ୍ତି ତୋଳି । ୧୭ ।

ବୁଲଇ ଖଣ୍ଡିଲେ ଦେବ ଶୂନ୍ୟ ପନ୍ଥେଣ
ଗରୁଡ଼ ଉଡ଼ଇ ଚକ୍ର ଧଲ୍ଲେ ପନ୍ଥେଣ । ୧୮ ।

କୋଟିଏ ସୂର୍ଯ୍ୟର କୋଟି ଚନ୍ଦ୍ରର ତେଜ ।
ହସ୍ତେ ଲଙ୍ଘିଲେ ତାହା ଦେବାଧିରାଜ । ୧୯ ।

ମନୋମୟେ ପୁରେ ପଶି ବୁଦ୍ଧିକି ଲଙ୍ଘି ।
ଅହଙ୍କାରମୟ ପୁରେ ଜଣିଲେ ବେଢ଼ି । ୨୦ ।

ପ୍ରକୃତିମଣ୍ଡଳେ ଯାଇଁ ପ୍ରବେଶ ହୋଇ
ଅର୍ଦ୍ଧମାତ୍ରା ସନ୍ନିଧେଣ ମିଳିଲେ ଯାଇଁ । ୨୧ ।

ଶଙ୍ଖ ଚକ୍ର ଗଦା ପଦ୍ମ ମୂରତି ହୋଇ ।
ଦୁର୍ଗତିତାରିଣୀ ଦୁର୍ଗା ସେଠାରେ ରହି । ୨୨ ।

ବୋଲନ୍ତି ଶ୍ରୀହରି ଶୁଣେ ଶୁଣ ରୁକ୍ମିଣୀ ।
ଏହୁ ମହାଦେବୀଟି ପ୍ରକୃତି-କାରଣୀ । ୨୩ ।

କୋଟି କୋଟି ବ୍ରହ୍ମ ପାଦରଜରୁ ଜାତ ।
ଏ ପୁଣି ରାଧାଙ୍କ କୋଟି କଳାରୁ ଖ୍ୟାତ । ୨୪ ।

ସତ୍ୟାନନ୍ଦେ ମୈତ୍ରା-ସୁର-ଦରପ ଚୂର୍ଣ୍ଣ ।
ନିତ୍ୟ ଜନନୀ ଏହି ଅନାଦି ନାମ । ୨୫ ।

ଏହାଙ୍କ କଳାରୁ ତୁମ୍ଭେ ଜନମ ହୋଇ ।
ଜନମେ ଜନମେ ଶକ୍ତି ପ୍ରିୟା ବୋଲଇ । ୨୬ ।

ଏତେ କହି ସେଠାରେ ଦର୍ଶନ କର ।
ପ୍ରବେଶ ହୋଇଲେ ବେଦମାତାଙ୍କ ପୁରୀ । ୨୭ ।

ବର୍ଣ୍ଣ ପ୍ରକୃତ ଏହୁ ଯେ ଦଶସ୍ଥଳ ।
ବିରଜା ବୋଲିଣଟି ଏହାଙ୍କୁ ବୋଲନ୍ତି । ୨୮ ।

ବ୍ରହ୍ମା ବେଦ ଏହୁଠାରେ ଜନମ ହୋଇ ।
ତେଣୁକି ଦେବେତାମାଙ୍କୁ ବିରଜା କହି । ୨୯ ।

ସହସ୍ରଶିରଷା ନାମେ ବେଦପୁରୁଷ ।
ବେଦମସ୍ତେ ସୃଷ୍ଟି ଏହୁ କରେ ପ୍ରକାଶ । ୩୦ ।

ଏଣିକି ବ୍ରହ୍ମାର ବେଦ ଗମନ ନାହିଁ ।
ତେଣୁକି ନିଗମ ନିତ୍ୟ ଅଗମ କହି । ୩୧ ।

ସେଠାରୁ ଦର୍ଶନ କରି ବେଗେ ଚଳିଲେ ।
ଲିଙ୍ଗରୂପୀ ଶିବପୁରେ ଯାଇ ମିଳିଲେ । ୩୨ ।

ଦର୍ଶନ କର ବୋଲନ୍ତି ଶୁଣ ସୁନ୍ଦର ।
ଏହାଙ୍କ ମହିମା ଦେବ କହି ନ ପାରେ । ୩୩ ।

ଲୋଚନଜେମାଠରୁ ଯାର ହୋଇସ୍ଥେ ପ୍ରକାଶ
ରବି ଚନ୍ଦ୍ର ଗ୍ରହ ତାରା ମାସ ଦିବସ । ୩୪ ।

ଏତେ କହି ଯେ ଭୁବନ୍ଟୁ ବହିନ ଗଲେ ।
କୃଷ୍ଣମୂର୍ତ୍ତି ବ୍ରହ୍ମରୂପୀ ଦର୍ଶନ କଲେ । ୩୫ ।

ଏହିମତେ ଲଙ୍ଘି ଗଲେ ଅନେକ ପୁରୀ ।
ବିଭୂତି ମଣ୍ଡଳ ଯାଇ ବାଜସ୍ତେ କହି । ୩୬ ।

ଷୋଡ଼ଶ ପ୍ରକାରେ ତହିଁ ମହିମା କହି ।
ବଶିକେଣକ ଭୁବନେ ମିଳଲେ ଯାଇ ।୩୭।

ତହିଁ ଯାଇଁ ଅନନ୍ତ-ଭୁବନେ ପ୍ରବେଶ ।
କେ କହି ପାରିବ ସେ ଅଶେଷ ବିଶେଷ ।୩୮।

ଗରୁଡ଼-ଭୁବନେ ଯାଇ ପ୍ରବେଶ ହୋଇ ।
ବୋଲନ୍ତି ବୈକୁଣ୍ଠ ପରି ଅଟଇ ଏହି ।୩୯।

ଅଷ୍ଟ ଦ୍ୱାରପାଳ ଚଣ୍ଡ ପ୍ରଚଣ୍ଡ ଆଦି ।
ସ୍ୱର୍ଣ୍ଣଦ୍ୱାରେ ମହାବଳୀ ଅଛନ୍ତି ରୁନ୍ଧି ।୪୦।

ଚଦ୍ଧିଣ ଘୁଞ୍ଚିଲେ ଗଲେ ଭିତରେ ପଶି ।
ଶଙ୍ଖ ଚକ୍ର ଗଦା ପଦ୍ମ ବସ୍ତ୍ର ଧାରଣୀ ।୪୧।

ଷୋଡଶ ଦଳରେ ଅବତାର ଷୋଡଶ ।
ସ୍ତୁତି କେ ମହିମା ପଥି କେ କହୁ ଲେଶ ।୪୨।

ତଦନ୍ତରେ ଦଶପଦେ ହୋଇଲେ ପ୍ରବେଶ ।
ପାର୍ଷଦେବତା ତହିଁ ଛନ୍ତି ବିଶେଷ ।୪୩।

ବୋଲନ୍ତି ଶ୍ରୀକୃଷ୍ଣ ପରି ପ୍ରାଣର ସହି ।
ଲଭିବ ଅନନ୍ତ ମୂଳ ସ୍ଥାନଟି ଏହି ।୪୪।

ଆନ୍ତର ଦ୍ୱାରକା ପରି ଏହୁ ଭୁବନ ।
ଏହିଠାରେ କୃଷ୍ଣ ଆତ୍ମ ସବୁ ସଦନ ।୪୫।

ଅଷ୍ଟ ପାଟବଂଶ ଆଦି ଯେତେକ ନାରୀ ।
ଯେ ଯାହା ଠାବରେ ଦେଖି ଚନ୍ଦ୍ର ସୁନ୍ଦରୀ ।୪୬।

ପୂର୍ବେ ଆତ୍ମ ପୁର ସଂକର୍ଷଣ ଦକ୍ଷିଣେ ।
ପଶ୍ଚିମେ ପ୍ରଦ୍ୟୁମ୍ନ ଦେଖ ରତ୍ନରମଣେ ।୪୭।

---

୪୭-୨ :—ପଦ୍ମନ ( କ, ଖ, ଗ, ଚ )

ପ୍ରାଗ୍ରେ ଉଷା ଅନିରୁଦ୍ଧ ଦେଖ ଗୋ ସଖି ।
ନବ ଆବରଣ ଏହୁ ଠାବରୁ ଦେଖି । ୪୮ ।

ବଢଣ ଦଳରେ ଉପବନ ବଢଣ ।
ଲୀଳା ଆବରଣେ ଲୀଳା ଅଶେଷ ରସ । ୪୯ ।
ଏମନ୍ତ ଶୋଡ଼ଶ ଦଳେ ଶୋଡ଼ଶବନ ।
ବନେ ବନଲୀଳାମାନ ଅତି ଗହନ । ୫୦ ।

ପଦ୍ମ ଦ୍ୱିତୀୟ ଦଳେ ଖଦିର ବନେ ।
ଗୋବର୍ଦ୍ଧନ ଗିରି ସଖି ଦେଖ ଲୋଚନେ । ୫୧ ।
ଆନ୍ୟ ଗୋପନବର ଏ ଦେଖ ଗୋ ସଖି ।
ଯହିଁ ଯେତେ ବ୍ରଜବଧୂ ମନ୍ଦିର ଲେଖି । ୫୨ ।

ନନ୍ଦପୁର ବୃଷଭାନୁ ମନ୍ଦିର ଆଦି ।
ବଚ୍ଛା ବଚ୍ଛପାଳ କେତେ ଛନ୍ତି ଅହ୍ଲାଦ । ୫୩ ।

ଯମୁନାପୁଳିନବନେ କାଳିନ୍ଦୀ ହ୍ରଦ ।
ଅଷ୍ଟଦଳ ମଧ୍ୟେ ଦେଖ ତରୁ କଦମ୍ବ । ୫୪ ।
ଦକ୍ଷିଣ ଦଳରେ ରାସ ଅଶେଷ ହୋଇ ।
ବରଦ୍ଧଣୀ ସ୍ଥାନ ଏହି ଦେଖ ଗୋ ସହି । ୫୫ ।

ନୈଋତ ଦଳରେ ବ୍ୟୋମାସୁରକୁ ମାରି ।
ଶଙ୍ଖଚୂଡ଼ ବଧ କଲେଁ ଶୁଣ ସୁନ୍ଦରି । ୫୬ ।
ଉତ୍ପଳବଧୂ ଲକ୍ଷଣଟି ଏହୁ ଦଳରେ ।
ଏ ପଦ୍ମ ପଶ୍ଚିମ ଦଳେ ଅର୍ଦ୍ଧନ୍ଧ ସଂହାରେ । ୫୭ ।

ଏହୁ ଦଳେ ଧାତା ଆସି କଲେ ଦର୍ଶନ ।
ଏହୁ ଦଳେ ଗଞ୍ଜଅନ୍ନ କଲେ ଭୋଜନ । ୫୮ ।

୫୬—୧ ;—ବେମାସୁରକୁ—ସବୁପୋଥି ୫୭—୨ ;—ସଂଘାରେ — ସବୁପୋଥି

ଏହୁ ଦଳେ ଖଣ୍ଡିତା ଭାଟି ରାଧା ମାନିନୀ ।
ଚରଣ ଧରଣ ବୋଧ କଲ୍ଲ କାମିନୀ । ୫୯ ।

କାବ୍ୟ ବଳେ କାଳୀପୁର କାଳନ୍ଦୀ ହ୍ରଦ ।
ଗହନ କାନନ ସ୍ଥଳ କୁସୁମ ଗନ୍ଧ । ୬୦ ।
ଏହୁ ଦଳେ ପୁଷ୍ପବନେ ଗୋପୀଙ୍କ ସଙ୍ଗେ ।
ବହୁବିଧ-ବିନୋଦ-ଲୀଳା ଅଶେଷ ରଙ୍ଗେ । ୬୧ ।

ଉତ୍କଣ୍ଠିତା ଲକ୍ଷଣଟି ଏ ଦଳେ ବସି ।
ହରିର-ବଳ-ମଦ୍ଦୁମା ଶୁଣ ସୁକେଶି । ୬୨ ।
ଦ୍ୱାଦଶରବିକିରଣ ଶୀତଳ ଚନ୍ଦ୍ରଁ ।
କଶୋଖ ବାସକସଜ୍ଜା ହୋଇଛୁ ଛନ୍ଦଁ । ୬୩ ।

ଗହଣ ଅର୍ଜନ କରି ଗୋପଯୁବତୀ ।
ଈଶାଣ ଦଳେ ଲଭିଲେ ଗୋବିନ୍ଦ ପଥ । ୬୪ ।

ଏହୁ ଦଳେ ଗୋପୀଙ୍କର ବସ୍ତ୍ର ହରଣ ।
କଳହାନ୍ତରିତା ଏଥେଁ ବସେ ଲକ୍ଷଣ । ୬୫ ।

ସୃଙ୍କଦଳେ କେଶୀବଧ ହୋଇଲା ସନ୍ଧ ।
ଗଙ୍ଗାଦି ସକଳତୀର୍ଥ ଏ ଦଳେ ବନ୍ଧ । ୬୬ ।

ସ୍ୱାଧୀନଭର୍ତ୍ତୃକା ନାମେ ଲକ୍ଷଣ ବସେ ।
ନିକୁଞ୍ଜକୁଟୀର ଦଳ ଅନଳ ଦିଶେ । ୬୭ ।

ଅଭିସାରିକା ଲକ୍ଷଣ ବସଇ ଛନ୍ଦଁ ।
ରାଧାକୃଷ୍ଣ କେଳିକ୍ରୀଡ଼ା-ସଦନ ଏହୁ । ୬୮ ।
ଏହୁ ଅଷ୍ଟଦଳ ରାସଦ୍ୱାରେଣ ଦେଖ ।
ଗୋପୀଶ୍ୱର ମହେଶ୍ୱର ଦ୍ୱାରେ ରକ୍ଷକ । ୬୯ ।

ରୁକ୍ମଣୀ ବୋଇଲେ ଏ ତ ଅନନ୍ତ ମାୟା ।
ଅନ୍ତ ନ ପାଇଲୁ ଯହିଁ ଦେଖୁଛୁ ଯାହା । ୭୦ ।

ଠାବେ ଠାବେ ବଇକୁଣ୍ଠ ବିଷ୍ଣୁ ମୂରତି ।
ଶଙ୍ଖ ଚକ୍ର ଗଦା ପଦ୍ମ କରେ ଧରନ୍ତି । ୭୧ ।

ଠାବେ ଠାବେ ବାସୁଦେବ ରୁକ୍ମଣୀ ଦେଖି ।
ରାମ କାମ ଅନିରୁଦ୍ଧ କେ କହୁ ଲେଖି । ୭୨ ।

ଠାବେ ଠାବେ ଲକ୍ଷ୍ମୀ ନାରାୟଣ ସରୂପୀ ।
ବିବିଧ ବିଭୂତମତେ ଆନନ୍ଦରୂପୀ । ୭୩ ।

ଠାବେ ଠାବେ ରାଧାକୃଷ୍ଣ ଗୋପିକାବୃନ୍ଦ ।
ଠାବେ ଠାବେ ରାସକ୍ରୀଡ଼ା ଲୀଳା ଆନନ୍ଦ । ୭୪ ।

ଯଦ୍ୟପି ନ ଯାଇ ପ୍ରଭୁ ଏଥ ମହିମା ।
ସର୍ବମୂଳ-ମଣ୍ଡଳ କେସନେ ଜାଣିମା । ୭୫ ।

ସକଳ-ଦ୍ୱାରକାମୂଳ କେବଣ ଆନ ।
ସର୍ବନିତ୍ୟଥଳ-ମୂଳ କହ ଭୁବନ । ୭୬ ।

ଆଦ୍ୟ ରାଧା ଆଦ୍ୟ କୃଷ୍ଣ ଆଦ୍ୟ ରୁକ୍ମଣୀ ।
ଆଦ୍ୟ ବାସୁଦେବ ପୁର କେମନ୍ତେ ଜାଣି । ୭୭ ।

ଶ୍ରୀହରି ବୋଇଲେ ପରମ୍ପରା ଦୁର୍ଲଭ ।
ସାଧୁ ସାଧୁ ବୁଦ୍ଧି ତୁମ୍ଭ ଶୁଦ୍ଧି ସୁଲଭ । ୭୮ ।

ଏତେ ବୋଲି କାଳିନ୍ଦୀ ପୁଳିନେ ପ୍ରବେଶ ।
ମହାଭୟଙ୍କର କାଳମାୟା ପ୍ରକାଶ । ୭୯ ।

ସେହିଠାରୁ ଏଣିକି ତାହାର ବିହାର ।
ତା ଚକ୍ରମଧ୍ୟରୁ କେହି ନୋହେ ବାହାର । ୮୦ ।

ଯେ ଯେତେ ହୋଇଲେ ତାହା ଭିତରେ ଖେଳି ।
ନାଭ୍ୟମଣ୍ଡଳକୁ ବେଢ଼ି ହୋଇଛୁ ବେଢ଼ି । ୮୧ ।

ସ୍ୱର୍ଗ ମଞ୍ଚ ପ୍ରାୟେ ତାର ବିସ୍ତାର ସ୍କନ୍ଧ ।
ବ୍ରହ୍ମାଣ୍ଡ ଖଣ୍ଡକୁ ଜିଣି ବୃଷାଳ ମୂଣ୍ଡ । ୮୨ ।

ଜିଭ ଯାର କୋଟି କୋଟି ବ୍ରହ୍ମାଣ୍ଡ ଚୂଳେ ।
ବିକଟ ଦର୍ଶନ ମେରୁ ମନ୍ଦର ଚୂଳେ । ୮୩ ।

ପ୍ରଚଣ୍ଡ ବଳିଣ ମହାଭୁଜ ବିସ୍ତୀର୍ଣ୍ଣ ।
ଠାରେ ଥାଇଁ ଯାଞ୍ଚ କରେ ସର୍ବଭୁବନ । ୮୪ ।

ନଖ ଭଖ ଲକ୍ଷ ଲକ୍ଷ ଯୋଜନ ଦଶେ ।
ଭୟେ ଯମ ପ୍ରାଣ ଦିବ ଜମ୍ବୁକଶାପେ । ୮୫ ।

ବିକଟ ବଦନ ଦେଖି ଦେବୀ ରୁକ୍ମିଣୀ ।
ମହାଭୟ ହୃଦ୍‌ଭଜନ ନୃପଦୁଲଣୀ । ୮୬ ।

କାଣ୍ଡୋଳ ପ୍ରମାଣେ ଦେବୀ ସଙ୍କୋଚ ଗଲେ ।
ପ୍ରଭୁ ବାମ ଭୁଜମୂଳ ତଳେ ଲୁଚିଲେ । ୮୭ ।

ଶ୍ରୀକୃଷ୍ଣଙ୍କ କାଲାମ୍ବା ଗଡ଼ୁଁ ଚନ୍ଦ୍ରିଲ ।
ବୈଷ୍ଣବମୂରତ ହୋଇ ପଥ ଛାଡ଼ିଲ । ୮୮ ।

ପତଙ୍ଗବର ଉଡ଼ାଇ ସେଠାରୁ ଗଲେ ।
ଅଷ୍ଟବଟ ନିକଟେଣ ବଜସ୍ୱେ କଲେ । ୮୯ ।

ପାରିଜାତ ତରୁମୂଳେ ପଶ୍ଚିମ ଦ୍ୱାରେ ।
ଦ୍ୱାରକା ସମୁଦ୍ର ମୂଳ ସ୍ଥାନ ସେଠାରେ । ୯୦ ।

---

୮୪—୧ :—ପ୍ରଚଣ୍ଡ ବଳିଷ୍ଠ ଭୁଜଦଣ୍ଡ ବିସ୍ତୀର୍ଣ୍ଣ ( କ, ଚ );
୮୭—୨ :- ମୂଳେ ଲୁଚି ରହିଲେ (ଗ); ଯିକେ [illegible] (ଢ, ଝ)

ତ୍ରିଗୁଣାତୀତ ଏତ ନିର୍ଗୁଣ ମୂର୍ତ୍ତି ।
ଆଦ୍ୟମୂର୍ତ୍ତି ବାସୁଦେବ ସେ ସ୍ଥାନେ ସ୍ଥିତ । ୯୧ ।

ଅଶେଷ କୋଟି ଦ୍ୱାରକା ବୈକୁଣ୍ଠ କୋଟି ।
ଏହୁ ସ୍ଥାନ ଅଂଶାଅଂଶୁ ଜାତ ହୋଏଛି । ୯୨ ।

ଉତ୍ତର ଉଦ୍ୟାନମଧ୍ୟେ ହରିଚନ୍ଦନ ।
ସଙ୍କର୍ଷଣବ୍ୟୂହ ଯକ୍ଷୀ ଦେଖ ଲୋଚନ । ୯୩ ।

ପ୍ରାଚୀ ଦିଗେ ସନ୍ତାନ ସ୍ଥଳରେ ବସନ୍ତ ।
ରତି-କାମଦେବବ୍ୟୂହ ତତ୍ୱ ମୂରତି । ୯୪ ।

ଦକ୍ଷିଣେ ଉଦ୍ୟାନ ପଞ୍ଚ ଗହନ ବନ ।
ଉଷା ଅନିରୁଦ୍ଧ ସୁରତରୁ ମୂଳେଣ । ୯୫ ।

ଏଠାରୁ ଏଣିକ ପଶି ନିତ୍ୟ ବିହାର ।
ମୂଳ ରାଧା ମୂଳ ଗୋପୀ ମୂଳ କିଶୋର । ୯୬ ।

ସେ ସ୍ଥଳ ମହିମା କିସ କହିବା ସହି ।
ବଚନ ଲୋଚନ ମନ ନ ଗମେ ଯହିଁ । ୯୭ ।

ନିରନ୍ତରେ ଦେବ ଆଶା ତହିଁ ରହିଲା ।
ଶ୍ରୀଗୁରୁ ଚରଣ ଶିରେ ଧରି ଧାଇଲା । ୯୮ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଦ୍ୱାବିଂଶ ଛନ୍ଦେ, ।
ସକଳାସ୍ୱାଦ ବୈକୁଣ୍ଠ ଆଦ୍ୟରୂପ କନେ ॥
ତ୍ରୟୋବିଂଶ ଛନ୍ଦ ବର୍ଣ୍ଣିଲେ କେବଣ କେବଣ ସମ୍ବାଦ,
କହିବାକୁ ଆଜ୍ଞା ହୋଉ ଏଥର ସେ ଆସ୍ୱାଦ । ୨୨ ।



୯୩—୨ :—ଜହ୍ନ (କ, ଖ, ଚ); ୯୪—୨ : ସ୍ୱର—(କ,ଖ,ଚ)

# ଏକୋନୋତ୍ତରଶତ ଛାନ୍ଦ ।



ରାଗ ବଙ୍ଗଳାଶ୍ରୀ

ଶ୍ରୀଧର ବଚନ ଶୁଣି ସ୍କନ୍ଦଙ୍କ ବାଳୀ ।
କ୍ରୋଧେ ଭରୁଭର ଶୋକ ନୋହେ ସମ୍ଭାଳ । ୧ ।
ଏବେ ସେ ଜାଣିଲ ପ୍ରଭୁ ତୁମ୍ଭର କଥା ।
ଏକାବେଳେ ଛଳାଇଲ ସବୁ ସେନେହୀ । ୨ ।
ନତୀ ଯେ ବୋଇଲ ସେ ତ ତୁମ୍ଭର ସ୍ୱଭାବ ।
କାଳେ ତାହୁଁ ଅଧିକ ଲଜ୍ଜିତ ଏ ଦେବ । ୩ ।
ଗୋପର ଗୋପୀ ଅଛିବେ ଯେ ଯାହା ଘର ।
କାଳେ ତ ନ ଥାନ୍ତି ଅମ୍ଭେ ତୁମ୍ଭ ସଙ୍ଗର । ୪ ।
ବାସୁଦେବମୂର୍ତ୍ତି ନନ୍ଦାପ୍ରୟେ ତ ନାହିଁ ।
ଯେ ସ୍ଥଳେ ବୁକ ଶିରୁପେ ପଶିବୁ ତାହିଁ ।
ନନ୍ଦସ୍ୱେ ଜାଣିଲୁ ଅମ୍ଭେ ସଂସାର ସଙ୍ଗ
ସଂସାରେ ଲଭିବ ତାହିଁ ପରମ ସଙ୍ଗ । ୬ ।
ଯେ ଯାହାର ସେ ତାହାର କାଳେ ହୋଇଲା ।
ଅକୁଳିଆ ସଙ୍ଗ ଗୋଟି ପଛ ରହିଲା । ୭ ।
ଏତେ କହୁ କ୍ରୋଧ ଦେବୀ ବହୁତ କଲେ ।
ତଥରେ ସମ୍ଭାଳ ଦମ୍ଭ ହୋଇ କହିଲେ । ୮ ।
ବୋଇଲେ ତ ଯେ ହୋଇଲା ହୋଇଲା କଥା ।
କାଢଲେ ଭାଙ୍ଗିବ କେଉଁ ହୃଦର ବ୍ୟଥା । ୯ ।
ତଥାପି ନନ୍ଦନପଣେ ପୁଚ୍ଛଇ ମୁହିଁ ।
ତୁମ୍ଭେ ଯେ ଅଛିବ ମୋତେ କାହାକୁ ଦେଇ ।

୭-୨ ଅଗୁଳିଆ ( କ ) ଅଗୋଳିଆ । ( ଚ ) ।

ଆମ୍ଭେ ତ ତୁମ୍ଭର ସଙ୍ଗ କୋହୁଁ ଗୋପାଇଁ ।
କ ଅର୍ଥେ ମିଛକୁ ମୋହ ଅଛ ଲଗାଇ । ୧୧ ।।
ତୁମ୍ଭ ମାୟା ଦେଖି ମୋତେ ଲଗିଲ ଭୟ ।
ଏଥକୁ ଆମ୍ଭର କିଛି ନାହିଁ ଉପାୟ । ୧୨ ।
ସର୍ବସଙ୍ଗ ତୁମ୍ଭେ, କାଲେ କାହାର ନୁହ ।
ଖେଳ ସଙ୍ଗ ତେଜି ତୁମ୍ଭେ ଅଲଗେ ରହ । ୧୩ ।
ଶ୍ରୀହରି ବୋଇଲେ ସଖି ନୁହଇ ଏହା ।
ସର୍ବଦା କାଳରେ ଆମ୍ଭେ ତୁମ୍ଭର କାହା । ୧୪ ।
ତୁମ୍ଭେ ଯହିଁ ଥିବ ଅମ୍ଭେ ତହିଁ ପ୍ରମାଣ ।
ତୁମ୍ଭ ଆମ୍ଭ ନାନାକାର ଶରୀର ଜାଣ । ୧୫ ।
ଏତେ ବୋଲି ଗୋଲକ ମଣ୍ଡଳ ଜିଣିଲେ ।
କିଂପୁରେଶ୍ୱରଙ୍କ ଦ୍ୱାରେ ଯାଇଁ ମିଳିଲେ । ୧୬ ।
ଦୂରୁହୁଁ ବାହନ ତେଜି ଦର୍ଶନ କଲେ ।
କିମ୍ପୁରଷ ଧଣ ଭକ୍ତ ହୋଏ ମୁରାରି । ୧୭ ।
ଦେଖିଣ ହସିଲେ ନତ୍ୟତତ୍ତ୍ୱକାରେଣୀ ।
କ ଅର୍ଥେ ଅଇଲ ବନ୍ଧୁ, ସଙ୍ଗେ ରମଣୀ । ୧୮ ।
ଶ୍ରୀ ହରି ବୋଇଲେ ଶୁଣ କୃପାକଟାକ୍ଷି ।
ସର୍ବ ଗର୍ଭବାରତା କ ଓହାଡ଼େ ଅଛି । ୧୯ ।
ବିଦର୍ଭରାଜ୍ୟର ରାଜକୁଳପ୍ରସୂତା ।
ମମ ପ୍ରାଣ ପରମେଶ୍ୱର ଏ ନିଜ କାନ୍ତା । ୨୦ ।
ତୁମ୍ଭ ଶ୍ରୀଚରଣେ ନତେ ଇଚ୍ଛନ୍ତି ଭକ୍ତି ।
ଶ୍ରୀରାଧାପାଦପଙ୍କଜ ଦର୍ଶନେ ମତି । ୨୧ ।

---

୧୦—୧:—ସର୍ବଦା କାଳରେ ତୁମ୍ଭେ କାହାର ନୁହ ( କ, ଙ ),
୧୦—୨:—ଖେଳସାର ସଙ୍ଗ ତେଜି ଅଲଗେ ରହ ( ଚ ) ।
୧୯—୨:—ଉବାର ଅଛି ( କ, ଖ ) ।

କି ପୁଣ ବୋଇଲେ ବସ୍ତ୍ର କହିଲୁ ଯାହା
ନ କହୁଁ ଆଗହୁଁ ଆମ୍ଭେ ଜାଣୁନ ତାହା । ୨୨ ।

କୋଟି ବୈକୁଣ୍ଠରେ କୋଟି ଲକ୍ଷ୍ମୀ ମୂରତ ।
କୋଟି ବ୍ରହ୍ମାଣ୍ଡରେ କୋଟି ରୁକ୍ମଣୀସ୍ଥିତ । ୨୩ ।

କାହିଁ କେତେ ଛନ୍ତି ଏହା ଗଣୀତା ନାହିଁ ।
ସଖୀଙ୍କ ଦର୍ଶନ ଏହୁ ପାଇବ କାହିଁ । ୨୪ ।

ଏକ ବ୍ରହ୍ମାଣ୍ଡର ବଳଭଦ୍ର ମୂରତ ।
ବେଳେଟି ବହୁତ ମୋତେ କଲ୍ପ ଭଗତ । ୨୫ ।

ତାହାର ଆରତ ଦେଖି ସେନ୍ନଣ ଗଲି ।
ମନ୍ତ୍ରବଳେ ଅଙ୍ଗ ତାର ପାଲଟ କଲି । ୨୬ ।

ତେବେ ସେ ଅଙ୍ଗ ତାହାର ଶବ୍ଦ୍ଧା ପଡ଼ିଲା ।
ପ୍ରିୟମଦା ସଖୀ ତାହା ଦେଖି ବାଉଲା । ୨୭ ।

ମାୟା_କର ତଳେ ତାକୁ ଅଇଲି ଗ୍ରହ୍ମି ।
ଏପ୍ରକାରେ କେତେ ତୋତେ କହିବା ଫେଡ଼ି । ୨୮ ।

କୋଟି ବାସୁଦେବ ଶିବ ସ୍ୱୟମ୍ଭୂ ମୂର୍ତ୍ତି ।
ଏ ଦ୍ୱାରକୁ ଏମାନେ ଗଣିତା ନୁହନ୍ତି । ୨୯ ।

କେବଳ କଥାଏ ଅଛୁ ଅତି ଗୁପତ ।
ଜଗତେ ଅଗମ୍ୟ ଗୁରୁମତେ ବ୍ୟକତ । ୩୦ ।

ଶ୍ରୀଗୁରୁଚରଣେ ଯେବେ ଧାରଇ ସେବା ।
ତାହାଙ୍କ ପ୍ରସନ୍ନେ ବସ୍ତ୍ର ଏ ସୁଖ ଲଭ । ୩୧ ।

ଦର୍ଶନ କରିବା ଶକ୍ୟ ଯାହାର ହୋଇ ।
ଆଉ କି ସେ ଜନ ଏଥୁଁ ବାହୁଡ଼ି ଯାଇ । ୩୨ ।

ଯାକୁ ଯେଉଁ ଅଧିକାର ଆଜ୍ଞା ହୋଇଛି ।
ସେ ଯାହା ବଳୁତ ବନ୍ଧ ବାନ୍ଧ ରହିଛି । ୩୩ ।

ଏ କଥା ମହାନତ୍ୟକୁ ଲେଡ଼ାଇ ଆସି ।
ସର୍ବଦା ଭଜନରେ ଏ ବୈକୁଣ୍ଠ ବିଳାସୀ । ୩୪ ।

ତୁମ୍ଭେ ଯେ ଶ୍ରୀକୃଷ୍ଣ ନାଥ ନିତ୍ୟ ମୂରତି ।
ଯି ବୁଣେ କିଶୋରରୂପ ବର୍ଣ୍ଣେ ଅତି । ୩୫ ।

କଲ୍ପଣା ଅଂଶରୁ ହର ମନ୍ତ୍ରୀକୁ ଗଲ୍ ।
ରାଧାଙ୍କ କଲ୍ପନା ଅଂଶ ସଙ୍ଗରେ ନେଲ୍ । ୩୬ ।

ତେତେବେଳେ ଏ ସଙ୍ଗ ତୋ କାହ୍ନୁଁରେ ଥିଲ ।
ଛଣେକ ସଙ୍ଗକୁ ସଙ୍ଗ ମୋହୋର କଲ । ୩୭ ।

ରାଧା କୃଷ୍ଣ ବେନି ତୁମ୍ଭେ ଗୋପକୁ ଗଲ ।
ନିତ୍ୟଲୋକ ଲୀଳା ଅଂଶ ସଙ୍ଗକୁ ନେଲ । ୩୮ ।

ଯହୁଁ ଯେତେ ଲୀଳାଅଂଶ ବୈକୁଣ୍ଠ ଆଦି ।
ପୁରୁଷ ପ୍ରକୃତି ଅଂଶ ଘେନିଲ ଶୋଧି । ୩୯ ।

ବସ୍ତୁ ବାସୁଦେବ କଳା ରୁକ୍ମିଣୀ ଅଂଶ ।
ଲକ୍ଷ୍ମୀ କଳାମାନ ଘେନି ହେଲେ ପ୍ରକାଶ । ୪୦ ।

ରାଧାକୃଷ୍ଣରୂପେ ଗୋପେ କ୍ରୀଡ଼ା ବହିଲ୍ ।
ବସ୍ତୁ ଅଂଶ କଳା ଘେନି ଦ୍ୱାରକା ଗଲ୍ । ୪୧ ।

ଏ ସ୍ତବେ ସକଳଲୀଳା ତୋହୋର ଅଙ୍ଗ ।
ଆଡିବା ବେଳକୁ ତୋର ରାଧିକା ସଙ୍ଗ । ୪୨ ।

ଏଥୁଁ ଯେତେ ଘେନିଗଲ୍ ତେତେ ଆଣିବୁ ।
ଅଗୁଳି ଲେକଙ୍କୁ ଆଣି କାହ୍ନୁଁ ଗଣିବୁ । ୪୩ ।

ଯହୁଁ ଯାହା ନେଇଅଛୁଁ ତହୁଁ ଛାଡ଼ିବୁ ।
ନିତ୍ୟଅଂଶ ଘେନି ନିତ୍ୟଅଂଶେ ଜଡ଼ିବୁ । ୪୪ ।

---

୪୩ —୨;—ଗକୁଳି ଲୋକଙ୍କୁ ( ଚ ); ଅଙ୍ଗୁଳି ( କ, ଘ )

ତେବେହେଁ ତୁ ବିନା ଗୁରୁକୃପା ନ କଲେ ।
ଲଭି ନ ପାରନ୍ତି ବସ୍ତୁ ଏ ମାନ ଭଲେ । ୪୫ ।
ରୁକ୍ମଣୀ ଶୁଣିଲେ ଯହୁଁ ଅମୋଘବାଣୀ ।
କଳା ଗଞ୍ଜିଗଲେ ନୀଳଉତ୍ପଳ କାନ୍ତି । ୪୬ ।
ବଦନ୍ତି ମାଧବ ଶୁଣ ଅଖିଳମାତ ।
ତୁମ୍ଭେ ସେ ନିପୁଣ ଗୁରୁ ସର୍ବଯୁକତ । ୪୭ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ତୁମ୍ଭେ କହିବ ।
ରୁକ୍ମଣୀ ଦେବୀଙ୍କ ପ୍ରତିକାର ବାନ୍ଧିବ । ୪୮ ।
ଏ ମୋର ପ୍ରାଣର ପ୍ରିୟା ହୃଦସ୍ଥରନ୍ତି ।
ଅନ୍ତରରେ ଏହୁ ମୋର କରନ୍ତି ଯନ୍ତ୍ର । ୪୯ ।
କେବେହେଁ ମହତ ସତ୍ୟ ନୋହିବ ଭଙ୍ଗ ।
ତେଣୁ କର ଲୋକୁ ଥାଇଁ ସୁଜନ ସଙ୍ଗ । ୫୦ ।
ପ୍ରସନ୍ନ ହୋଇଲେ ଶୁଣି ନିଜଗତମାତ ।
କୃପା କଲେ ମନ୍ତ୍ର ଯନ୍ତ୍ର ସକଳ ତନ୍ତ୍ର । ୫୧ ।
ଆଜ୍ଞା ଦେଲେ ରୁକ୍ମଣୀଙ୍କି ଏ ତନ୍ତ୍ର କହ ।
ଦ୍ୱାରକାରେ ଗୁରୁ କର ଏହାଙ୍କୁ ଥୁଅ । ୫୨ ।
ଦ୍ୱାରକା ପୁରନ୍ଦରପୁର ଏହା ଚରଣେ ।
ଶିଷ୍ୟପଣେ ରହିଥିବେ ସର୍ବ କାରଣେ । ୫୩ ।
ମନ୍ତ୍ରୀ ଗୋପୀ ରାଧାଙ୍କ ଏ ଅନନ୍ତ ବନ୍ଧୁଁ ।
ମନ୍ତ୍ରସିଦ୍ଧ କରିବେ ସେ ରୂପକୁ ଧ୍ୟାୟି । ୫୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ ମାତ ।
ଫିଟିଲା ସକଳ ସନ୍ଧି ରୁକ୍ମଣୀ ଚିତ୍ତ । ୫୫ ।

---

୪୬—୨:—କାଳୀ କି ଦଣିଲେ (କ, ଖ) "କଣି" ମଧ୍ୟ ହୋଇପାରେ ସ, ।
୫୦—୧:— ମନ୍ତ୍ରକୁ (କ, ଖ, ଘ) । ୫୧—୧:—ନିପୁରମାତ (କ, ଖ) ।

ପ୍ରାଣଭରୁ ପଞ୍ଚଦଳ ରମଣୀ ମଣି ।
ମୁରୂର୍ଷୁଙ୍କରେ ବରଷିଲ୍ଲ ଅମୃତ ପାଣି । ୫୬ ।

ଗରୁଡ଼ ପିଠିରେ ବସେ ଶ୍ରୀଜଗନ୍ନାଥ ।
ବାହୁଡ଼ା ବଜସ୍ତେ ପ୍ରଭୁ କଲେ ତ୍ୱରିତ । ୫୭ ।

ବାମଜାନୁ ପରେ ବାମା ବସାଇ ହରି ।
ଆନନ୍ଦେ ମିଳିଲେ ଦେବ ଦ୍ୱାରକାପୁରୀ । ୫୮ ।

ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣରେ ଆଶ।
ନରକରେ ତନ୍ତେ ଦେବଦୁର୍ଲ୍ଲଭ ଦାସ । ୫୯ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ତ୍ରୟୋବିଂଶ ଛାନ୍ଦେ,
ଶ୍ରୀପୁର ବାସୁଦେବ ପରମସଂବାଦ ବନ୍ଧେ ।
ଚତୁର୍ବିଂଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ସନ୍ଦେଶ,
କହିବାକୁ ଆଜ୍ଞା ହୋଇ ମୋତେ ହୃଷୀକେଶ । ୨୩ ।



## ଚତୁର୍ବିଂଶ ଛାନ୍ଦ ।

ରାଗବରାଡ଼ି—କଳଶା ବାଣୀରେ ଗାଇବ ।

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନ ।
ହାଲେହୋଳ ପଡ଼ିଅଛି ଦ୍ୱାରକା ଭୁବନ ।
କେ ବୋଲଇ ସବୁ ଅଛି କୃଷ୍ଣ କେଣେ ଗଲେ ।
ରୁକ୍ମିଣୀଦେବୀଙ୍କି କପା ଏକା କରି ନେଲେ । ୧ ।

ରାଗ କଳଶା :—(କ, ଖ, ଘ, ),

କେବଣ କାର୍ଯ୍ୟେଣ ଗଲେ ନ ଜାଣିଲେ କେହୁ ।
ଏକେ ବଡ଼ ସମ୍ପଦ ତେଜିଲେ କସ ପାଇଁ ।
ମନର ସୁବସ୍ଥା ଏ ତ ଅଟନ୍ତି ସମସ୍ତ ।
ସୁଖେ ଯେବେ ଯାଆନ୍ତେ, କହନ୍ତେ ଜଣେ ମାତ୍ର । ୨ ।
କେ ବୋଲଇ ଏ ଯେବେ ହୋଅନ୍ତେ ମନଯର
ରୁକ୍ମିଣୀଙ୍କି କିଆଁ ସେ ନଥାନ୍ତେ ଏକା କରି ।
ତାଙ୍କୁ ଯେବେ ଏକା ହୋଇ ଜଗତେ ରମିବେ ।
ଅଚାନ୍ତା ଥାନରେ ରହୁ ନଚନ୍ତେ ରମିବେ । ୩ ।
କେ ବୋଲଇ ଗଲେ ଯେ ସମସ୍ତ ବନ୍ଧୁଜନ
ରହିଲେ କେବଣ ଆନେ ବାରତା କୋହିଲ ।
ସବଠାକୁରାଣୀମାନେ ଝୁରି ଝୁରି ଖୀନ
ନିରନ୍ତରେ ଲୋତକ ବହିଲ ଘନଘନ ।
ନେକଲେ ଭୋଜନ ପାନ ସର୍ବ ସୁଖଶଯ୍ୟା
କର୍ପୂର ଚନ୍ଦନ ବାସ ପୁଷ୍ପ ସନ୍ତୋଜ୍ୟା ।
ସବୁରୁଁ ଅଧିକ ଶୋକ ସତ୍ୟଭାମା ପୁରେ
କ୍ଷଣେ କ୍ଷଣେ ଅନ୍ୟାନ ବାରତା ପ୍ରଚରେ । ୪ ।
କେ ବୋଲଇ ସତ୍ୟଭାମା ଛାଡ଼ିବେକ ଜୀବ
କେ ବୋଲଇ ଏତେବେଳଯାଏ ଖାଲୁଁ ଥିବ ।
ସହକେ ଶ୍ରୀକୃଷ୍ଣ ପତି ଅଟଇ ଯାହାର
ବଳେ ଜୀବନ ଦିବା ତଥ କ ତାହାର । ୨ ।
ସତ୍ୟଭାମାମୁଖ ହିଁର ମୂର୍ଚ୍ଛିଲେ କେତେକ
ପତିସ୍ରୋତ ଯାର ଦେହ ଧରେ କେତେ ଦିନ ।
ପ୍ରଭୁମାନଙ୍କର ଏହୁ ଉଚିତ ବେଭାର
କଲେହିଁ କରନ୍ତୁ ସେ ଗୋ ଏମନ୍ତ ଆଗ୍ରହ । ୬ ।

---

୩—୪;—ଅଚନ୍ତ (କ, ଖ, ଘ) । ୭—୩ :—କାଏ ହେତେ (ଗ, ଚ)

ଜନମୁଖେ ଏସନ ବାରତା ପ୍ରଭୁ ଶୁଣି ।
ଅନ୍ତେଶ୍ୱରପୁରେ ନେଇ ଛାଡ଼ିଲେ ରୁକ୍ମିଣୀ ।
କଶ୍ୟପସୁତଙ୍କୁ ଆଜ୍ଞା ଦେଲେ ହୃଷିକେଶି
ଚମ୍ପୂ ସ୍ତ୍ରୀ ରସୁର୍ଣ୍ଣ ଅଧ ହୋଇଲେକ ନଶି । ୮ ।

ପ୍ରଭୁ ବସ୍ଥରନ୍ତ ଏବେ କ ବୃଦ୍ଧି କରିବା ।
କେବଣ ପ୍ରକାରେ ତାଙ୍କ ବେଦନା ହରିବା

ଏତେ ବୋଲି ଆପଣେ ସୁବର୍ଣ୍ଣରୂପ ଧରି
ଚହ୍ନଲେ ପଶିଲେ ଯାଇଁ ସତ୍ୟଭାମା-ପୁରୀ । ୯ ।

ସୂରଛନ୍ତ ସ୍ତିଶ୍ୱବୃନ୍ଦ ନ ବାଣଇ ସନ୍ଧ
ରହିଲେ କ ବହିବା କମନ୍ତେ ନାନାବିଧ

କେହୁଣି ପ୍ରକାରେ ଦେଖା ନ ବର୍ଜିଲ ଗ୍ୟାନ
କେବଳ ରହିଛୁ ଏକା କୃଷ୍ଣ ତହିଁ ଧ୍ୟାନ । ୧୦ ।

ଅଦୃଶ୍ୟ ରୂପରେ ଗଲେ ଶ୍ରୀହରି ମିଳିଲେ
ସତ୍ୟଭାମା ଆଗେ ଯାଇ ଭ୍ରମର ଛାଡ଼ିଲେ ।
ଶ୍ରୀଅଙ୍ଗ ସୌରଭ ପାଇ କୃଷ୍ଣପ୍ରାଣପ୍ରିୟା
ଚମକ ଉଠିଲେ ଦେଖା ଉଲ୍ଲସଇ ହିୟା । ୧୧ ।
ଅନାଗେ ଅନାଇଁ ଦେଲେ ଶ୍ରୀକୃଷ୍ଣର ମୁଖ
ନୟନ ଭୃକୁଟି ଦେଖା ଜନ୍ମାଇଲେ ଶୋକ

ଭ୍ରମର ପକାଇ ଦେଇ ପ୍ରଭୁ ବନମାଳୀ
ସତ୍ରାଜିତଜେମାକୁ ଧରିଲେ ହୃଦେ ତୋଳି । ୧୨ ।

---

୧୦-୨-ବୃଦ୍ଧି ( ଖ, ଗ ) ୧୧-୧ :-ଶ୍ରୀକୃଷ୍ଣ ପଶିଲେ ( ଗ, ଚ ) ୧୨-୩:
ଛଭେଦ ବନମାଳୀ ( କ, ଖ ) ।

ତାହା ଦେଖି ଅନ୍ତର ହୋଇଲେ ସର୍ବନାଶ
ଅନ୍ତଃସ୍ତ୍ରୀ ମାର କେତେ ବୋଇଲେ ସୁନ୍ଦରୀ ।
ଶ୍ରୀହରି ବୋଇଲେ ସଖି କହଇ ମୁଁ ଆଗ
ଦୋଷ ଥିଲେ ଦଣ୍ଡ କର ଶେଷ ପରିତ୍ୟାଗ । ୧୩ ।

ବୁଝାଇ କହିଲେ ସହୁଁ ସକଳ ବେବସ୍ଥା
ଶୁଣି ଛାଡ଼ିଗଲା ଦେବୀ ମନୁଁ ମନବ୍ୟଥା ।
ଆନନ୍ଦେ ଭିଡ଼ିଲେ ଧରି ଶ୍ରୀହରି ଶ୍ରୀଅଙ୍ଗ
ବଢିଲା ପୀରତି ଅତି ସୁରତପ୍ରସଙ୍ଗ । ୧୪ ।

ପ୍ରିୟ ପ୍ରିୟା ସମାଗମେ ସାହିଲା ରଜନୀ
ବିବିଧ ବିନୋଦେ ଦେବ ତୋଷିଲେ ରମଣୀ ।
ସତ୍ୟଭାମା ରୁକ୍ମିଣୀଙ୍କ ମୂଳେ ଦେଲେ ନେଇ
ରତ୍ନସିଂହାସନେ ପ୍ରଭୁ ବିଜେ କଲେ ଯାଇଁ । ୧୫ ।

ସତ୍ୟଭାମା ରୁକ୍ମିଣୀଙ୍କି ଏକ ପ୍ରୀତି କରି
ବାମଜାନୁ ଉପରେ ବସାଇ ମୁରୁନାରି ।
ଯୁବା ଯୁବତୀଙ୍କି ମନ୍ତ୍ର ଶ୍ରବଣେ କହିଲେ
ସତ୍ୟଭାମା ରୁକ୍ମିଣୀ ଯେ ଶ୍ରୀଗୁରୁ ହୋଇଲେ । ୧୬ ।

ଆଉ ଯେତେ ଯୁବତୀ ରୁକ୍ମିଣୀ ମୂଳେ ଦେଇ
ବାହାରେ ବିଜୟେ କଲେ ଅଖିଳଗୋସାଇଁ ।
ରୁକ୍ମିଣୀ ଶ୍ରୀଚରଣେ ସମସ୍ତେ ସେବା କରି
ମନ୍ତ୍ର ଉପକରଣ ହୋଇଲେ ଶୁଦ୍ଧ ଭରି । ୧୭ ।

ମନ୍ତ୍ର ଯନ୍ତ୍ର ଭେଦ ସନ୍ଧି ନାନା ଉପଚାର
ସମ୍ଭରନ୍ତି ନାରୀ ସର୍ବ ବିବିଧ ପ୍ରକାର ।

ପା-୬: ଅନ୍ତଃସ୍ତ୍ରୀ ( ଘ ) ଆନ୍ତଶାଳା ( ଗ )

ଯହୁଁ ଯାହା ପଢ଼ିଲ ସେ ମନ୍ତ୍ର ହୋଇଗଲେ
ଯହୁଁ ଯାହା ଦେଖିଲେ ତା ଯନ୍ତ୍ର କହିଲେ । ୮ ।

କୃତାର୍ଥକାରିଣୀ ତୁମ୍ଭେ ପରମ ଈଶ୍ୱରୀ ।
ଭାସିଗଲ ଭେଳା ତୁମ୍ଭେ ଧଇଲ ଉଦ୍ଧରି ।
ଶୁଣି ସ୍ତମ୍ଭୀଭୂତ ସେ ହୋଇଲେ ସର୍ବନାରୀ
ବୋଇଲେ ଏ କଥା କାହା ବେଳେ ହୋଏ କହି । ୧୯ ।

ତୁମ୍ଭର ପ୍ରସାଦୁଁ ଉପଦେଶ ହୋଇ ଖ୍ୟାତ
କି ଜଗକାରିଣୀ ତୁମ୍ଭେ ଅଗିଁଆତର ଗିଁଆତ ।
ସୁରୁ ବଇଷ୍ଣବ ରାଧାକୃଷ୍ଣ ସେବାବିଧି ।
ତୁମ୍ଭର ପ୍ରସାଦେ ସର୍ବ ଧର୍ମ ହେଲ ସିଦ୍ଧି । ୨୦ ।

ଏତେ କହି ଶ୍ରୀଚରଣେ ନମିଲେ ସୁନ୍ଦରୀ
ଆନନ୍ଦେ ରହିଲେ ସର୍ବେ ଦ୍ୱାରକାନଗରୀ
ଏ ଭବସାଗରୁ ମୋତେ ଉଦ୍ଧାରଣ ନେମା
ଅଧମ ଉଦ୍ଧାରଣ ସେ ତୁମ୍ଭର ମହିମା । ୨୧ ।

ଜୟ ଜୟ ଜଗନ୍ନାଥ ଅନାଥର ନାଥ
ସନକସନନ୍ଦର ଭକ୍ତେ ଆସ୍ୱାତନ୍ତ୍ର ।
ଏଥୁଅନନ୍ତରେ ସନ୍ତ ସମସ୍ତେ ଶୁଣିମା
ଅଧମଉଧାରଣ ସେ ପ୍ରଭୁଙ୍କ ମହିମା । ୨୨ ।

ତୁମ୍ଭେ କୃପାନିଧି ମୋର ଦୋଷ ନ ଘେନିମା
କେ ଅନ୍ତ କରି କହିବ ଶ୍ରୀହରିମହିମା ।
ଆଦି ଅନ୍ତ ମଧ୍ୟ ଶୋଧି ଘେନିମା ଏ ଗୀତ
ତେବେ ସେ ଜାଣିମା ଏଥି ସର୍ବରସ ତତ୍ତ୍ୱ । ୨୩ ।

---

୧୯—୨—ଅଗିଁଆନର ଗିଁଆତ ( କ, ଖ ), ଅବ୍ୟପ୍ନତାମାତ ( ଚ ) ।

ରହସ୍ୟମନ୍ତ୍ରଗ୍ରନ୍ଥ ଏ ବିଚାରମସ୍ତ ଗ୍ରନ୍ଥ
ଏ ସୁଖ ଜାଣିମ ଯେହୁ ବିବେକ ପୁରୁଷ ।
ଅବିବେକ ବୋଲିବ ଏ କଉଁ ପାଠେ ଥିଲା
ଥିଲା ଯେବେ କିଛି କିପାଁ ଆଗହୁଁ ନ କଲା । ୧୪ ।

ବିବେକୀ ବୋଲିବେ ଏ ଗୁପତେ ଥିଲା ରହି
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲି ଥୋଇ ।
ଯଉଁ ପୁସ୍ତ ବନ୍ଧିଲା ତାହାକୁ କଲେ ଦସ୍ତୁ
ମହିମା ଅନନ୍ତ କେତେ କରିବା ନିର୍ଣ୍ଣେସ୍ତୁ । ୧୫ ।

ପାଠମାନେ ଯେବେ ଅନ୍ତ କରି କହିଥାନ୍ତେ
ମହିମା ଅନନ୍ତ ବୋଲି କିପାଁ ଲେଖି ଯାନ୍ତେ ।
କହି କହି କୋଟିକଲେହେଁ ନ ପାଇଲେ ଅନ୍ତ
ତେଣୁକରି କହିଗଲେ ମହିମା ଅନନ୍ତ । ୧୬ ।

ଏହି ମତ କେତେ କେତେ ଭଣ୍ଡାରେଣ ଥିଲା
କେତେ କେତେ କବିଙ୍କୁ ବାଣ୍ଟି ବାଣ୍ଟି ଦେଲା ।
ଏବେହେଁ ଭଣ୍ଡାରେ କେତେ କେତେ ପୂରିଥିବ
କଳ୍ପ କଳ୍ପାନ୍ତରେ କି ସେ ବଢ଼ିଲେ ସରିବ । ୧୭ ।

ଯେ ଯେତେ କହିଲା ତାର ତେତେକ ପ୍ରମାଣ ।
ଏତେ ଏତେ ବୋଲି ତଥି କେ କେ ମାନେ ଜାଣି
ଦେଲା ଲୋକ ଜାଣିଛୁ ଅଣିଲା ଲୋକ ଜାଣେ
ବିବେକୀ ଜାଣିମ ତାହା ମଧ୍ୟପାତ୍ରପଣେ । ୧୮ ।

ଏ ତତ୍ତ୍ୱ ବେଳିକେ ସୁଖ ଜାଣିମାକୁ ନାହିଁ ।
ଅବିବେକୀ ଲୋକ ଏଥି ପଶିବ ଯେ କାହିଁ ।
ପଶିଲେ ତ ମିଶାଇ ମିଶିଇ ରଖେ ଯେହୁ ।
ଯାଉକ୍ୟ ବାଟଇ ସେ କହିବ ଅବା କାହୁଁ । ୧୯ ।

୧୯—୧:—ବିଚାରକେ ( କ, ଖ ) ବିଚାରକେ ( ଘ ); ବିବେକେ, ।
ବେକେ ମଧ୍ୟ ହୁଏ ।

ସଂସାରସାଗର ଏ ଅନନ୍ତ କୋଟି ମୁଖ
ଯେ ଯେଣୁ ମଜଇ ସେ ତେଣୁ ମଣେ ସୁଖ ।
ସନ୍ତୋଷ ମହନ୍ତ ଯେହ୍ନ ସମୁଦ୍ର ପରାୟେ
ସମଭାବ ହୃଦର ସମସ୍ତ ପରିଚୟେ । ୩୦ ।

ଶୂରୁପା ପ୍ରାଏକ ସନ୍ତ ହୃଦର ଅଟଇ
ସେ ଯେହ୍ନେ ସୁଦ୍ରବ୍ୟ ରଖି କୁଦ୍ରବ୍ୟ ତେଜଇ ।
ଚାଲୁଣି ଜଳାଇ ପ୍ରାଏ ଅସନ୍ତର ଗର୍ବ
ସୁଲଗି ପକାଇ ସେ ଅଲଗି ରଖେ ସର୍ବ । ୩୧ ।

ତାର ପ୍ରାୟେ ପର ଗୁଣ ଚଲାଇ ପକାଇ
ଅନ୍ୟ ଦୋଷ କୁର୍ଣ୍ଣି କରି ପସରା ଧଅଇ ।
ସନ୍ତ କହେ ପରଗୁଣ ଆପଣାର ଦୋଷ ।
ଗୁରୁ ବଇଷ୍ଣବ ସେବା ନ ସହଇ ଲେଶ । ୩୨ ।

ମନୁଷ୍ୟ କୋଟିକେ ମିଳେ ଉତ୍ତମ ଜଣେକ
କୋଟିଏ ଉତ୍ତମ ଯାଇ ସାଧୁ ମିଳେ ଏକ ।
କୋଟି ସାଧୁ ମଧ୍ୟେଣ ବୈଷ୍ଣବ ଏକ ଜାଣ
କୋଟିଏ ବୈଷ୍ଣବେ ସେ ଲଭଇ ସନ୍ତ ପୁଣ । ୩୩ ।

ସନ୍ତ କୋଟିକେଣ ସେ ମହାନ୍ତ ଏକ ଜାଣି ।
ମହାନ୍ତ କୋଟିକେ ଏକ ମହାତ୍ମା ବଖାଣି ।
ଯେଉଁ ମହାତ୍ମା ସେହ୍ନ ଜଗନ୍ନାଥ ସ୍ୱାମୀ
ସବୁ ଆତ୍ମା ତୁଳ ମୂଳ ଆତ୍ମା ଅନ୍ତର୍ଯାମୀ । ୩୪ ।

ଏତେକ ପ୍ରକାରେ ସନ୍ତ ମହାତ୍ମା ମହିମା
ସନ୍ତ ହୋଇ ନ ଭାବଇ ଅହଙ୍କାର ସୀମା ।
ପର ଦୁଃଖେ ଦୁଃଖୀ ସନ୍ତ ପର ସୁଖେ ସୁଖୀ ।
ପରମକାରଣେ ସନ୍ତ ନୋହେ ମନ ଦୁଃଖୀ । ୩୫ ।

ହାନି ଲଭ ବିସ୍ମର ସବତେ ଗରୁ ଛାର
ତାହାର ଠାବରେ ସନ୍ଥ ନୋହେ ଅବେକ୍ଷଣ ।
ସବସୁଖ ମିଳଇ ପ୍ରାପତ ସନ୍ଥ ସଙ୍ଗ
ସକଳ କଳୁଷ ନାଶା ଅସାଧୁ ପ୍ରସଙ୍ଗ । ୩୬ ।

ସବୁଙ୍କର ସନ୍ଥ ବୁଦ୍ଧି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କିମ୍ପାଇଁ ବହନ୍ତା ।
ଏକକୁ ଆରେକ ନ ଚହନ୍ତି ମହାକ୍ଷେଳେ
ତେଣୁ ଯମ୍ବମର ହୋଇ ମରନ୍ତି ସକଳେ । ୩୭ ।

ନ୍ୟାସୁ ନ ବୁଝନ୍ତି ସେ ବୁଝନ୍ତି ଅନମିତେ
ମତ୍ସରଙ୍କ ଦୁରସ୍ଥାରେ ମୋହ ଅନୁବ୍ରତେ ।
ଦେଖିବା ମାତ୍ରକେ ଭୟେ ଲାଗଇ ଯାହାକୁ
କେମନକେ ସନ୍ଥ ବୋଲି ବୋଲିବା ତାହାକୁ । ୩୮ ।

କହିବାକୁ ଡର ତେଣେ ନ କହିଲେ ମର
ସୃଷ୍ଟି ନାଶଗଲା ପ୍ରଭୁ ବୁଝିବା ଦୁସ୍ତର ।
ଏଥୁ ଉଦ୍ଧରଣ ପ୍ରଭୁ ବେଗେ ମୋତେ ନାଥ
ପରାଲବ୍ଧେ ଥିଲେ ସନ୍ଥ ପାଦତଳେ ଥୋଅ । ୩୯ ।

ଜୟ ଜୟ ଜଗନ୍ନାଥ ଜଗତର ନାଥ
ଦୀନଜନ ସୋଦର ଭଗତ ଆମ୍ଭ ତନ୍ତ୍ର ।
ଏ ଭବସାଗରୁ ପ୍ରଭୁ ପାର କର ମୋତେ
ଯାହୁ ଯାହୁ ଆରତେ ଫୁକାର ଡାକେ ତେତେ । ୪୦ ।

ଦୁର୍ଗମ ସଂସାର ଦେଖି ମହାଭୟେ କଲି
ଅହଙ୍କାରମସୂପରେ ରହି ନ ପାରିଲି ।

---

୩୮—୧:—ଅନମିତ ( ଘ ); ଆନମତେ ( ଗ )

ସମସ୍ତେ ବହନ୍ତି ସାଧୁ ସୁକୃତି ସନ୍ତକ
କାଳେ ସନ୍ଥ ଉପରକୁ ହୋଅନ୍ତି ଅନ୍ତକ । ୪୧ ।

ସର୍ବଗତ ଦେଖି ଦେଖି ହୋଇଲି ମଉନ
କେହୁଣି ପ୍ରକାରେ ମୋର ନ ସଫଳ ଧନ ।
ଶରଣତାରଣ ତୁମ୍ଭେ କରୁଣାବାରିଧି
ଏ ମୋହୋର ଆତଙ୍କ ଫେଡ଼ିବା କୃପାନିଧି । ୪୨ ।

ଅପରାଧ କ୍ଷମା କରି କରିବା ସଦୟେ
ନିରନ୍ତରେ ଶ୍ରୀଚରଣେ କରଇଁ ବିନୟେ ।
ଏତେକ ମାଗଇଁ ପ୍ରଭୁ ହୋଇବା ପ୍ରସନ୍ନ
ଜନ୍ମେ ଜନ୍ମେ ନୋହିବ ମୋ ଅସାଧୁ ଦର୍ଶନ । ୪୩ ।

ପିତା ମାତା ପତ୍ନୀ ପୁତ୍ର ଅସାଧୁ ନୋହିବ
ବନ୍ଧୁ ପ୍ରୀତ ପରଜନ ଯେ ମୋର ହୋଇବ
ତୁମ୍ଭ ବିନୁ ପାଆନ୍ତି ମୋ ନୋହିବନ୍ତି କେହି
ଦଣ୍ଡିଲେ ଦଣ୍ଡିବ ମୋତେ ଆପେ ସ୍ୱବଶାହି । ୪୪ ।

ତୁମ୍ଭ ବିନୁ ଜଗନ୍ନାଥେ କେହି ମୋର ନାହିଁ
ଗଣ୍ଡି ମାରୁଅଛ କେତେ ଦୋଷ ମୋ ଚୋପାଇଁ ।
କେଶ ଧରି ରଖ ନେଇ ଶ୍ରୀଚରଣତଳେ
ଅନାଥ ଦେବର ଫେଡ଼ ଦୁସହ ଆକୁଳେ । ୪୫ ।

ଇତି ଶ୍ରୀ ରହସ୍ୟମଞ୍ଜରୀ ଚତୁର୍ବିଂଶ ଛନ୍ଦେ,
ରୁକ୍ମିଣୀ ସତ୍ୟଭାମା ବିବଧ ବୋଧ ବନ୍ଧେ ।
ସମ୍ପୂର୍ଣ୍ଣ ରହସ୍ୟମଞ୍ଜରୀ ସୁଷ୍ଟପ୍ରେମଧାମ,
ଶ୍ରବଣେ ସୁଖ ଏ ଭକ୍ତଜନ ବିଶ୍ରାମ । ୪୬ ।



# ଟୀକା ।



ରହସ୍ୟମଞ୍ଜରୀ—ରାଧାକୃଷ୍ଣଲୀଳାର ଗୂଢ଼ତତ୍ତ୍ୱର ପ୍ରକାଶ ଯେଉଁ କାବ୍ୟର ବିଷୟ, ସେହି କାବ୍ୟ ।

---

## ପ୍ରଥମ ଛାନ୍ଦ ।

ଗାହା—ଗାଥା (ସଂସ୍କୃତ) ପ୍ରାକୃତଭାଷାରେ ଗୀତଛାନ୍ଦ । ୪:—ସଂକ୍ରମଣ—ସଂକ୍ରାନ୍ତି ୫:—ଉତ୍ସର୍ଗ—ଉନ୍ନତ, ଉଚ୍ଚ । ୬:—ସ୍ୱସ୍ୱର—ସ୍ୱର୍ଣ୍ଣ ପଞ୍ଚସ୍ୱର—ପଞ୍ଚମ ଶ୍ରେଷ୍ଠ ହେବାରୁ । ବିରଞ୍ଚି ସୁର୍ଯ୍ୟ । ଆଳଯତେ—ସ୍ଥାନ ସୁନ୍ଦର ରୂପରେ ଅବସ୍ଥିତ କରେ, ଯୋଗାଏ । ପ୍ରଚଣ୍ଡନନ୍ଦନ—ଭୁଷଣ୍ଡକାକ । ନେତର କାଛେଣୀ—(ନେତ) ପଟ୍ଟବସ୍ତ୍ରବିଶେଷ, (କାଛେଣୀ) କ୍ଷୁଦ୍ର ସୁନ୍ଦର ବସ୍ତୁ, ନେତର କାଛେଣୀ—କ୍ଷୁଦ୍ର ସୁନ୍ଦର ପଟ୍ଟବସ୍ତ୍ର । ଚକା । ଚରଣ ବଇଠି ତଟ କଣି—(ଚକା) ଜଗନ୍ନାଥ ମହାପ୍ରଭୁଙ୍କ ବିଜୟ ପୀଠ, (ଚରଣ ବଇଠି) ପଦ ରଖିବାର ଉଚ୍ଚ ପୀଠ (ତଟ) ପ୍ରାନ୍ତ (କଣି) ବଳି ପଡ଼ିଥାଏ । ଚଣ୍ଡକର—ସୂର୍ଯ୍ୟ । ବୃହାଳ—ବିଶାଳ, ଘୋଲ ଓ ବଡ଼ । ନିଚଳ—ନିଶ୍ଚଳ । ଅଘତମିର—ପାପରୂପ ଅନ୍ଧକାର । ଦମ୍ବୁଣାଦମନକ (ସଂସ୍କୃତ) ସୁବାସ ବୃକ୍ଷବିଶେଷ । ଆଲମ୍ବ—ଝାଲର । ଡାମ୍ବର—ଶୋଭା; ଏ ସ୍ଥଳରେ ମେଘର ଝୁଲିବା ଓ ଦୋଳ ଖେଳିବା । ଉପାଙ୍ଗ—ସହକାରୀ ବାଦ୍ୟ ବିଶେଷ । ଏହି ଅର୍ଥରେ ଏ ଶବ୍ଦ ମରହଟ୍ଟା ଭାଷାରେ ବ୍ୟବହୃତ ହୁଏ ।

> "ଇକତେ ବୀଣା ଢାଲ ମୃଦଙ୍ଗ ଝଞ୍ଜରୀ କିଙ୍କିଣୀ ଉପାଙ୍ଗ
> ଦେବାଙ୍ଗନା ଯେହ୍ନେ ଉପଭୋଗ ବନାଯ ବେଗେ ସୃଲ୍ଲକା ।"

ଭ୍ରାନ୍ତି—ବିଭ୍ରମ ବା ବିଳାସ । ପ୍ରଲମ୍ବ ଅକ୍ଷରୁ—ପ୍ରଣବ ଅକ୍ଷରରୁ ।

---

## ଦ୍ୱିତୀୟ ଛାନ୍ଦ ।

ସାତବଂଶ—ସାତ୍ୱତଙ୍କର ଅନ୍ଧକ, ବୃଷ୍ଣି ପ୍ରଭୃତ ସାତ ପୁତ୍ର ଥିଲେ । ସେହି ବଂଶରେ ଶ୍ରୀକୃଷ୍ଣଙ୍କର ଜନ୍ମ, ତହୁଁ କବି 'ସାତବଂଶ' କହିଅଛନ୍ତି । ହୋଡ଼—ହୁଡ଼—ପଣ । ଅଭିରଙ୍ଗୀ—ବିଳାସମୟୀ । ବିରଙ୍ଗ—ବିରସ । ବେସନ—ବ୍ୟସନ, ଅହାର ବିହାରାଦି । ଚତୁଃସମ—ଚନ୍ଦନ, ଅଗୁରୁ, କୁଙ୍କୁମ, କସ୍ତୁରୀ ଲେପ । ହେଠ ( ପ୍ରାକୃତ )—(ସଂ) ଅଧଃ—ତଳ । ଦଣ୍ଡମଣ୍ଡ—ଦଣ୍ଡିବା ଓ ମଣ୍ଡିବା ଅର୍ଥାତ୍ ବିଗ୍ରହ ।

## ତୃତୀୟ ଛାନ୍ଦ ।

ଅଲେକତ—ଅଲୌକିକ । ଏମାନେହେଁ ନାହୁଁ—ଏମାନେ ସମର୍ଥ ନୁହନ୍ତି । ବିଗ୍ଭଇ—ବିବାହିତା । ସେରନ୍ଧ୍ରୀ—ଶୈରନ୍ଧ୍ରୀ: ଶ୍ରଦ୍ଧାବନ୍ତ ଶବ୍ଦରୁ ଅପଭ୍ରଷ୍ଟ । ଭଣ୍ଡୀନ୍ତ—ଭଣ୍ଡୀଙ୍କୁ । ସଂହରି—ସମ୍ଭାଳି, ରଖି । ଢିଙ୍ଗରି—ଦଣ୍ଡାୟମାନ ହୋଇ, ଠିଆ ହୋଇ ।

## ଚତୁର୍ଥ ଛାନ୍ଦ ।

ସୋହୋଡ଼—( ପ୍ରାକୃତ ) ସୋହର ( ସଂସ୍କୃତ ) ଶୋଭନ । ପଟ୍ଟୁଆର—ସେବକ । ଅପସର—ଡକଅା, ମାଣ୍ଡି । ସଙ୍କଟସ୍ନେହା, ପରମଶୋଭା, କୋଟିକନ୍ଦର୍ପମୂରତଆଭା, ପ୍ରବଳଭଣ୍ଡା, ଚକୁରଚିଙ୍କା, ପରାଣପିଆ, ବକାଚରା, ବଗ୍ରକଚଢ଼ା, ଗୀରବମୋଡ଼ା, ମୁଣ୍ଡଫୋଡ଼ା, ମନ୍ଦରଧର, ମନ୍ମଥନମର । କୁଳସଲଖା, ମାହୁନ୍ତପିଟା, ମାଳମାରୁଆ, ମଲ୍ଲାଲେଟା ଏସବୁ ଶବ୍ଦରୁ କାବ୍ୟର ପ୍ରାଚୀନତା ଜଣାଯାଏ ।

ଯମନିୟମାଦି—ଯୋଗର ଅଷ୍ଟଅଙ୍ଗ । ନବଅଦ୍ୱାସ୍ଥ—ନବଦ୍ୱାର । କଲାଦ୍ୱାସ୍ଥ ଅର୍ଥ ମଧ୍ୟ ପ୍ରଯୁଜ୍ୟ । ଆକଣ୍ଠା—ଆକାଙ୍କ୍ଷା । ନାସ୍ତି କେ—ଅଙ୍ଗବରେ । କାଣ୍ଠିଲ—କାଙ୍କ୍ଷଇ, ଅଭିଳାଷକରେ । ଲୁଚ୍ଛଯାଇଁ—ମୁରଧ୍ଧୁଏ, ଲଜ୍ଜା ବା ଦୁଃଖରେ ନମ୍ର ହେବା । ଏ ଶବ୍ଦର ପରେ ଦ୍ୱିଗୁଣସ୍ୱଚ୍ଛେଦ ଦାତବ୍ୟ । ତନ—ତନୁ ।

| | | |
|---|---|---|
| ନବମୀ | } | ଦୃଙ୍ମନଃସଙ୍ଗସଂକଳ୍ପୌ ଜାଗରଃ କୃଶତାଽରତିଃ |
| | | ହ୍ରୀ ତ୍ୟାଗୋନ୍ମାଦ ମୂର୍ଚ୍ଛାନ୍ତା ଇତ୍ୟନଙ୍ଗଦଶା ଦଶ । |
| ଦଶମୀ | | ନବମୀ—ମୂର୍ଚ୍ଛା, ଦଶମୀ—ମୃତ୍ୟୁ । |

ଗନ୍ଧବରେ - ଗନ୍ଧଲରେ ବା ଗନ୍ଧନରେ ।

---

## ଷଷ୍ଠ ଛାନ୍ଦ ।

ନେଟ ନେଟ ହୋଇ—ସଂକୁଚିତ ହୋଇ । ସୁପର୍ବାଣ—ଦେବତା । ମୃଗାଚ୍ଛି—ମୃଗାକ୍ଷି । ମହାବିଭୂତି—ମହୈଶ୍ୱର୍ଯ୍ୟ । ସ୍ୱାନୁଭୂତ—ଆତ୍ମଜ୍ଞାନ, ଜୀବର ଅନୁଭୂତ । ମୂଳବିଭୂତି—ଷୋଡଶ ବିଭୂତିର ମୂଳ ବିଭୂତି । ( ମୁଖବନ୍ଧ ଦ୍ରଷ୍ଟବ୍ୟ ) ମହାଭୂତି—ମହାବିଭୂତି ଅର୍ଥରେ । ସାଷ୍ଟମ—ସୂକ୍ଷ୍ମ, ସୌନ୍ଦର୍ଯ୍ୟ ।

---

## ସପ୍ତମ ଛାନ୍ଦ ।

ସାନ୍ଧେ—ସଦୃଶ । ଗଚ୍ଛି—ଯୁକ୍ତ ହୁଏ, ଯୋଗାଏ । ଙ୍କ—ଦାନ୍ତ । ( ୭ ମ ପଦ ) "ଗୋପୀ ତାଙ୍କ * * * * ପାଦ" ପଦ୍ମିନୀ—ଗୋପୀ, ସୂର୍ଯ୍ୟ—ଗୋପ, ଭୃଙ୍ଗ—ଶ୍ରୀକୃଷ୍ଣ, ଅଷ୍ଟାଳୁ—ଅର୍ଗାଳୁ,

ମେହମାନ—ଏ ଶବ୍ଦ ଅତ୍ୟନ୍ତ ପ୍ରାଚୀନ, ସାରଳା ଦାସ ଗ୍ରନ୍ଥରେ ମିଳେ । ଏହାର ଅର୍ଥ ମୂର୍ଖ । ବିସରିଲେ—ବିସ୍ମରିଲେ ।

---

## ଅଷ୍ଟମ ଛାନ୍ଦ ।

ଅଜାଗ—ଅଜାଣ, ଅଜ୍ଞାନକୃତ । ଗୃହପାତନା—ଗୃହ-ସଂସ୍ଥାପନା । ଗଡ଼ପାଳି—ଦଣ୍ଡବତ୍ ପଡ଼ି ପ୍ରଣାମ କରିବା । ସୁଣା—ଭାର, ସ୍ପନ—ସ୍ଥାନ ।

---

## ନବମ ଛାନ୍ଦ ।

୭ ମ ପଦର ପାଠ ପାଦଟିପ୍ପଣୀ ଅନୁସାରି ମଧ୍ୟ ସମୀଚୀନ ।

ଅର୍ଦ୍ଧିଛ—ଅଲ୍ପାକ୍ଷ । ସୁହୃଦେ—ସୁହୃଦସ୍ୱ ବା ସୌହୃଦ୍ୟ; ଏଠାରେ ସ୍ନେହ । ପତ୍ରପ୍ରବନ୍ଧେ—ପତ୍ରିକା, ଉତ୍କୃଷ୍ଟ ପ୍ରସଙ୍ଗରେ । ଜଡ଼ନ୍ତି—ଜଡ଼ବତ୍ ଆଚରଣ କରନ୍ତି । କାଛନ୍ତି ଛଟା ଶୋଭା ଭଙ୍ଗିରେ ଦେଖାନ୍ତି । ପଞ୍ଚା-ମଣ୍ଡେଇ—ପଞ୍ଚମଣ୍ଡପ । ଭଦ୍ରଚଉପାଟୀ—ସର୍ବତୋଭଦ୍ର; ଚତୁର୍ଦ୍ଦ୍ୱାରଯୁକ୍ତ ମଣ୍ଡପ ବିଶେଷ । କୌଞ୍ଚଗବାକ୍ଷ—କୌଞ୍ଚପକ୍ଷୀଯୁକ୍ତ ଝରକା ବା କୌଞ୍ଚାକୃତି ଝରକା । ସମ୍ଭାଇଗଲେ—ମିଳିଗଲେ ।

"ଶୁଣ ନିଧିପୁର ମଦନମନ୍ଦିର କେବଳ ଅଛି ଆଜିକି" ପରିଚ୍ଛେଦ ।

ରାଧାଙ୍କ ଦଶାନୁରୂପ ଏ କେଳିସଦନ ପଡ଼ିନାହିଁ, ପତନୋନ୍ମୁଖ ହୋଇ ରହିଅଛି । ରାଧା ଜୀବିତା, କୃଷ୍ଣପ୍ରାପ୍ତି ଆଶାରେ ଜୀବନ ଅତି କଷ୍ଟରେ ଅଛି । କେଳିସଦନ ମଧ୍ୟ ଦୁହିଙ୍କ ପୁନର୍ମିଳନକୁ ଯେପରି ଅପେକ୍ଷା କରି ରହିଅଛି ।

---

## ଦଶମ ଛାନ୍ଦ ।

ଭ୍ରାନ୍ତ—ଭୀତ-ସ୍ତବ୍ଧ-ଶୋକ୍ତ । ଆବୃତ୍ତ—ଆସ୍ୱତ୍ତ-ଥିବାଅସିବା; ଆକୁଳ । ମଣ୍ଡାପତ୍ତିଷ୍ଠା—ଫୁଲମଣ୍ଡା ପଣ୍ଡିଥିବା ବା ଯେ ମଣ୍ଡନ କରେ ଯେ ମଣ୍ଡା-ତାହା ପଣ୍ଡିଥିବା । ସୁତ୍ରବନ୍ଧ—ପଟ୍ଟଖଣ୍ଡ୍ର ( ଲୁଗାଖଣ୍ଡ୍ର ) ସମବାଯ—ଅଲଙ୍କାରବିଶେଷ ବା ସମନ୍ୱିତ-ଲଗାଲଗି ହୋଇଥିବା । ଗରଗଣ୍ଡିଷ୍ଠା—ଆଗଟଣ୍ଡ୍ର ( ଠିଆ, ଚଉ ଖଣ୍ଡ୍ରୁ କହ୍ନ ) କୁଣ୍ଡଦାମ—କୁଣ୍ଡର ଶୃଙ୍ଖଳ-କାଇଥର ଡେଉଁଣିଆ କରି ବାହାରେ ପିନ୍ଧନ୍ତି, ଖୋଲରେ ତାଡ଼ପତ୍ର କରି ମଧ୍ୟ କେତେକ ପେନନ୍ତି । ବାହୁଟି—ହସ୍ତର ଅଲଙ୍କାରବିଶେଷ । ବାହାରେ ପିନ୍ଧନ୍ତି । ଝଲକ, ଝଲକା—କର୍ଣ୍ଣ ଭରଣବିଶେଷ । ପାଶ-ଗୋଟିଆ—ପାଶଗଣ୍ଡିଆ - କର୍ଣ୍ଣାଭରଣବିଶେଷ । ନାସାପୁଟିଆ—ନାସିକାର ଅଲଙ୍କାର । ଝୁଣ୍ଟିଆ—ପ୍ରପଦ-ପାଦ ଅଙ୍ଗୁଳିରେ ପେନନ୍ତି ।

---

## ଏକାଦଶ ଛାନ୍ଦ ।

ସ୍ୱରମଣ୍ଡଳ—ବୀଣା ବିଶେଷ । ଯେଉଁ ବୀଣାରେ ଶ୍ରୁତିମଣ୍ଡଳଯୁକ୍ତ ସ୍ୱର ସମୂହରେ ଗ୍ରାମ ବିଶେଷର ମୂର୍ଚ୍ଛନା ଆସେ । ପିନାକ—ଧନୁରାକୃତି ସପ୍ତ-ତନ୍ତ୍ରବିଶିଷ୍ଟ ବାଦ୍ୟଯନ୍ତ୍ର । ଅମୃତ—ସ୍ୱରବାଦ୍ୟବିଶେଷ, ଉପେନ୍ଦ୍ରଭଞ୍ଜ ଲବଣ୍ୟବତୀରେ ଏ ବାଦ୍ୟକୁ ବୋଧହୁଏ ଅମୃତଯଷ୍ଟା ବୋଲି କହିଅଛନ୍ତି ଯଥା—"ଧରିବୁ ଅମୃତ ଯଷ୍ଟା ଧନ ବେଦନ କରେ ।" ରବା—ହିତାସ୍ୱର ଜାତୀୟ ବାଦ୍ୟ ଯନ୍ତ୍ର ବିଶେଷ, ପ୍ରାଚୀନ ନାମ ରୁଦ୍ରବୀଣା, ପାରସ୍ୟ ଭାଷାରେ ରବାବ୍ । ଡ୍ଡମ୍ଫ ପାରସ୍ୟ ଡ଼ଫ୍, ( ଇଂ ) Tambourine । ଢୋଲକ ଜାତୀୟ ବାଦ୍ୟବିଶେଷ । ଦୋସରି ଦ୍ୱିସ୍ୱରବିଶିଷ୍ଟ ମହୁରୀ । ତାରଣୀ—ତାରଣୀ, ତାରେଣୀ । ଏହିପରି ଅନ୍ୟାନ୍ୟ ଶବ୍ଦମାନ ଦ୍ରଷ୍ଟବ୍ୟ । ଘଙ୍ଗବାଣ—ଏକ ଜାତୀୟ ନାଗକେଳି, ବଡ଼ସ୍ୱା ପଇତ । ଉଦୁଗାର—ଉଦ୍‌ଗାର, ଉଦ୍‌ଗାର,

ଉକ୍‌କାର, ହୁଙ୍କାର । ମଯ୍ୟାଣ—କାମଦେବ ( ମଦନ ଶବ୍ଦରୁ ଅପଭ୍ରଂଷ୍ଟ ) ବାହ୍ୟାଳଦ—ବାହ୍ୟାଭର, ଲଦବା—ଲଦ; ଗୋଇ—ଗୋପୀ ।

---

## ଦ୍ୱାଦଶ ଛାନ୍ଦ ।

କୃଶାନୁ—ଅଗ୍ନି । ଶଫର—ଜୈଷ୍ଠମାସ । ଗାଜଲେ—ଗର୍ଜ୍ଜନ କଲେ । ମେହ୍ର—( ସଂ ) ମେଘ ( ପ୍ରାକୃତ ) ମେହ ( ଓଡ଼ିଆ ) ମେହ୍ର ( ସଂ ) ରଥ ( ପ୍ରାକୃତ ) ରହ ( ଓଡ଼ିଆ ) ରହ୍ର । ନର୍ଘାତ—ଶୁଷ୍କଣ ବଜ୍ର । ବିଗଂଫିଲେ—ବିକଶିତ ହେଲେ, ପ୍ରାଚୀନ ଶବ୍ଦ । ମୃହାଁ—ବିଷଷ୍ଟାଭିଳାଷ, ଆଯନ୍ତ ।

| | |
|---|---|
| ଶ୍ରୋଣେହା<br>ଶ୍ରୋଣେଷ୍ଟ | କାମୁକ, କାମୁକ୍ତା, ବୋଧହୁଏ ଶୋଣିତ ଶବ୍ଦରୁ ନିଷ୍ପନ୍ନ । କାରଣ ଶୋଣିତ - ଶ୍ରୋଣିତରୂପେ ଓଡ଼ିଆରେ କହିତ ମଧ୍ୟ ହୁଏ । |

ଷୁଣ୍ଡକେଶ୍ୱ—ଘାଗ ବା ପଶୁବିଶେଷ । କେସର—ନାଗାନକେସର ବା ନାଗେଶ୍ୱର ଫୁଲର କେଶର । ପୋଇ—ପୁଆଇ, ପ୍ରାପସ୍ତନ୍ ( ସଂ ) ମିଠାଇ ପୁଆଇବା, ଖଇ ପୁଆଇବା ଇତ୍ୟାଦ । ପାଣଆ—ପାରଶବ୍ଦଜ ଉକ୍ରୃଷ୍ଟ । ଖଣ୍ଡ - କନ୍ଦର୍ପ । କନ୍ଦୁ ଖଣ୍ଡରୁ କନ୍ଦଶବ୍ଦ ଆସିଅଛି । ଦ୍ୱାକର୍ଭ—କୋକଳ । କୁରୁବେଲ—ଚକ୍ରଗନ୍ଧ ବିଶିଷ୍ଟ ପୁଷ୍ପବିଶେଷ । ଭଙ୍ଗିଲେ - ବିକଶିତ ହେଲେ, ଚଅଁର ପକାଇଲେ ।

---

## ତ୍ରୟୋଦଶ ଛାନ୍ଦ ।

ଭେଦ—ଜଡ଼ିତ ହୋଇଅଛି । ଭାରତୀ—ଶରମୁଣ୍ଡା, ତୂଣୀର । ଲେଚ୍ଛ—ଛାଡ଼, ତ୍ୟାଗ କର । ଜାଣ୍ଡିଲ—ଖର୍ବ କଲେ । ଓହୋଣଯାଇ—ସଂକୁଚିତ ହୋଇଯାଇ ।

---

## ଚତୁର୍ଦ୍ଦଶ ଛାନ୍ଦ ।

ଗୁପ — ଗବାକ୍ଷ । ସୁପାତ—କୋମଳ ଓ ବହୁମୂଲ୍ୟ ଶେଯ । ଗଡ଼ାଇ—ପଡ଼ିଯାଉ, ପକାଇ । ଲଗ—କ୍ଷଣ । ଗଜ ଉଆର—ଡାକ ଛୁଆଁଇ ।

---

## ପଞ୍ଚଦଶ ଛାନ୍ଦ ।

ଚକ୍ରୁଚକ୍ରୁଜ—ଚନ୍ଦ୍ରକୁନ୍ତଳ । ଜବଗ—ଜୀବନ୍ତକରୁ, ଜୀବନ । ଲିହ୍ଭ—ଲେଉଟାଇ । ଫୁଲକାଉ—ଡାକ ।

---

## ଷୋଡ଼ଶ ଛାନ୍ଦ ।

ଶଖି—ଶଙ୍ଖ, ବକ୍ଷ, ଓଡ଼ିଆରେ ଶଖାକୁ ମଧ୍ୟ ଶଖା କହନ୍ତି । ଯଥା:—ଏକ ଲେଖା, ସହସ୍ରେ ଶଖା । ବାଗ୍ଧଫଳ—ମୁକ୍ତା । ବଳଣ —ବଳହୋଇଥିବା, ଗୋଲ, ବର୍ତ୍ତୁଳ, ବଳୀନଶକରୁ । ଧଟୀ—କଟି-ବସନ । କାଛୁ—କସି । ଅଙ୍ଘ୍ରି—ପାଦ । ମଞ୍ଜୀର—ନୂପୁର ।

---

## ସପ୍ତଦଶ ଛାନ୍ଦ ।

ଦଢ—ଦୃଢ । ଅମ୍ବରେ—ବସ୍ତ୍ରରେ । ସ୍ଥବରତାରୁ—ଅମ୍ବରେ ଧୀର ସ୍ଥିର । ଜମ୍ବୁନଦକୁ ଜମ୍ବୁନଦ ଆଣି—ସ୍ୱର୍ଣ୍ଣନଦୀରୁ ସ୍ୱର୍ଣ୍ଣଜଳ ଆଣି । ମେଢ଼—ଏକତ୍ରିତ କର । ପ୍ରଭା—ଆଲୋକମଣ୍ଡଳ ( Halo ) ବନ୍ଧନ୍ତି ବଧୂଙ୍କ । ନଙ୍ଗ—ଅନଙ୍ଗ, କାମଦେବ । ଓଡ଼ିଆଣୀ—କଟିମେଖଳା । ନାକଚଣାକର୍ଣ୍ଣ—କର୍ଣ୍ଣ ନାକଚଣା, କର୍ଣ୍ଣ ବସା ନାକଚଣା ।

---

## ଅଷ୍ଟାଦଶ ଛାନ୍ଦ ।

ନଗନ୍ଧ—ସୁଗନ୍ଧପୁଷ୍ପବିଶେଷ । ମଦନା—ମାଧବୀଜାତୀୟ ପୁଷ୍ପଲତାବିଶେଷ । ସୁଖଭଦ୍ରା—ଭଦ୍ରମୁଆ ଲତାବିଶେଷ । ଦାରେହ୍ୱାଦାଢ—ବହୁଦଳଯୁକ୍ତ ପୁଷ୍ପବିଶେଷ । କରୁଣା—ବାସନ୍ତୀ ପୁଷ୍ପବିଶେଷ । ରଙ୍ଗ-ଦୁଲାଳଭୂମନ୍ଦ—ଲାଲ ଓ ମନୋହର ଗନ୍ଧପଦ୍ମା ଚନ୍ଦ୍ର ବନ୍ଧ୍ୟା—ଧବଳ ପୁଷ୍ପବିଶେଷ । ତାରାବଳଙ୍କ—ତାରାପରି ଶୋଭା ପାଉଥିବା ପୁଷ୍ପ । ମଧୁ ଦ୍ରବା—ମଧୁବହୁଳ ପୁଷ୍ପବିଶେଷ । କୁଟିଲା—ତଗରଜାତୀୟ ପୁଷ୍ପବିଶେଷ । ବୈଜୟନ୍ତୀ—ପଞ୍ଚବର୍ଣ୍ଣପୁଷ୍ପବିଶିଷ୍ଟ ଜାନୁ ପର୍ଯ୍ୟନ୍ତ ଲମ୍ବିତମାଳା । କୈରବ—ଧଳାକଇଁ ।

---

## ଊନବିଂଶ ଛାନ୍ଦ ।

କଦମ୍ବ—ସମୂହ । ହୁଙ୍କାର—ଓଁକାର । କାମଜ—କାମୋଦ୍ଦୀପକ ବାଦ୍ୟ । ତନ୍ତ୍ରକ ତାରବାଦ୍ୟ । ଫୁତ୍କାର—ମୁଖବାଦ୍ୟବିଶେଷ । ଚର୍ମଜ—ମୃଦଙ୍ଗ, ଢମ୍ପ ଆଦି ବାଦ୍ୟ । ତାଳ—ଝାଞ୍ଜ । ମୁଦ୍ରା—ଢିବା, ଘୁଲା । ହେଉଛି ଦେଖାଇ, ହେଉଛି ଶିଖନ୍ତ । ସଶିଳ—ଶିଥିଳ । ସ୍ତମ୍ଭିତ ରହେ,—(ନାମଧାରୁ) ଜଡ ହୋଇ ରହେ । ବନ୍ଧ—ବନ୍ଧକାଶବରୁ ଅପଭ୍ରଷ୍ଟ । କାଳୀର ଆଳ—କାଳନ୍ଦୀହ୍ରଦ, କାଳୀୟନାଗବାସ । ଦୁଇଦଳ—ଦ୍ୱିତୀୟଦଳ ।

---

## ବିଂଶ ଛାନ୍ଦ ।

ଭୂଲ—ତୋଳ । ଭୃମ୍ନଡଁ—ଭୃମ୍ନଠାରେ । ତାଙ୍କଡଁ—ତାଙ୍କଠାରୁ । ଲୁଚ୍ଚହୋଇଯିବ—ଦୁଃଖରେ ସରିଯିବ । ସଂଘାତ—ସଙ୍ଗାତ, ସଙ୍ଗୀ । ଦୋସର—ଦ୍ୱିତୀୟ, ଅନ୍ୟ । ପୋସ୍ୱେଲା—ପୋହ୍ଲା । କଣ୍ଠାର—ଦଶାର, ସଦ୍ଦର, ଚଣ୍ଡୁର । ଛନ୍ଦି—ଛନ୍ଦିସ୍ଥ । ସ୍ୱେଖ—

ଉତ୍କୃଷ୍ଟ ଶ୍ରେଷ୍ଠ । ପ୍ରସର ହୋଇଲା—ସମାପ୍ତ ପ୍ରାପ୍ତ ହେଲା, ଫଳର ବାଟିଗଲା ।

---

## ଏକବିଂଶ ଛାନ୍ଦ ।

ଅନ୍ତେଶ୍ୱରପୁର—ଅନ୍ତଃପୁରସ୍ଥ ମହାଦେବୀ ମନ୍ଦିର । ଚତୁର୍ଦଶପ୍ରମାଣ ( ବିଦ୍ୟା )—ଚାରି ବେଦ, ଷଡ଼ଙ୍ଗ, ଧର୍ମଶାସ୍ତ୍ର, ପୁରାଣ, ମୀମାଂସା, ତର୍କ । ଝାସୁ—ଦ୍ରୁତଗତିରେ ପ୍ରବେଶ କରୁ । ସଂକ୍ଷେପି—ସଂକ୍ଷେପରେ ।

---

## ଦ୍ୱାବିଂଶ ଛାନ୍ଦ ।

ସୋମେ—( ସଂ ) ସୌମ୍ୟେ, ଉତ୍ତରଦିଗରେ । ବିପ୍ରଲବ୍ଧା—ଯେଉଁ ସ୍ତ୍ରୀ ସଙ୍କେତ ସ୍ଥାନକୁ ଯାଇ ନାୟକକୁ ପାଏ ନାହିଁ । ଉତ୍କଣ୍ଠିତା—ନିର୍ଦ୍ଦିଷ୍ଟ-କାଳରେ ନାୟକର ଅନୁପସ୍ଥିତିରେ ଯେ ଅତ୍ୟନ୍ତ ଶୋକାର୍ତ୍ତା ହୁଏ । ବାସକସଜ୍ଜା—ନାୟକର ଆଗମନ ପ୍ରତୀକ୍ଷାରେ ଯେଉଁ ନାରୀ ଆପଣା ଶରୀର, ଗୃହ ଓ ଶଯ୍ୟା ସଜ୍ଜିତ କରେ । କଳହାନ୍ତରିତା—ଯେ ନାୟିକା ନାୟକ ସହିତ କଳହହେତୁ ଦୂରରେ ରହି ଅନୁତପ୍ତା ହୁଏ । ସ୍ୱାଧୀନଭର୍ତ୍ତୃକା—ସ୍ୱାମୀଅଧୀନରେ ଯାହାର । ହରିଚନ୍ଦନ—ଦେବତରୁବିଶେଷ । ସନ୍ତାନ—ଦେବତରୁବିଶେଷ ।

---

## ତ୍ରୟୋବିଂଶ ଛାନ୍ଦ ।

ଛୁନାଇଲା—ଛୁଆଇଲା । ଅଗ୍ନୁଳୁଆ—ଅଗରୁ, ଧୂନ, ଲଘୁ—ଓଡ଼ିଆରେ ଗରୁଆ ବା ଉଦ୍‌ବର୍ତ୍ତି ଦେଉ ଅଗ୍ନୁରୁ ଅଗୁଳ—ଉଗୁଳୁଆ ଅଗୁଳୁଆ—ଉଗୁଳଆ—ଅଗୁଳଆ ବହଳ, ଉତ୍ପତ୍ତି, ବାକେ ।

ଗର୍ବବାରତା – ଅଳ୍ପର କଥା । ପ୍ରିୟମ୍ବଦା – ସ୍ୱପରେ ସାଣାବାଦ୍ୟତତ୍ପର । ଛର – ଛଳ । ଶୋଧି – ବଶ୍ୟରକର, ଶୁଦ୍ଧକର, କେବଳ । ଅମୋହ – ଅମୋଘଶବ୍ଦରୁ ।

---

## ଚତୁର୍ବିଂଶ ଛାନ୍ଦ ।

ଯଡଶ୍ରୋତା ଯାଇ ଦେହୁ ଧରେ କେତେଦେନ – ଅନ୍ୱୟ – ଯଡ ଯାହାର ଶ୍ରୋତା ( ଯଡଜନା ) ( ସେ ) କେତେଦନ ଦେହ ଧରେ ? ଶ୍ରୋତା – ( ସଂ ) ଶ୍ରୋଣ ବା ଶ୍ରୋତଶବ୍ଦରୁ ଉତ୍ପନ୍ନ – ଅର୍ଥ, ବେଦ, କ୍ଷାନ । ରସ୍ଥର୍ଣ୍ଣ ରଜନୀ; ଆତ୍ତପ୍ରାତ୍ତ – ଆତ୍ତପ୍ରାପ୍ତ, ଆତ୍ତଶୂଳା ( ହାତଶୂଳା ବା ଅନ୍ତଶୂଳ ) ମର୍ମଛେଦାରକ । ଅଭିମାନରେ ବା କ୍ରୋଧରେ ଅଭିଯୋଗ ପୂର୍ବକ ପ୍ରିୟଜନଙ୍କୁ ବାକ୍ୟବାଣ କ୍ଷେପ କରିବା । ଉପଗ୍ରରଣ – ଗ୍ରାହ୍ୟ ବା ଅନ୍ୟଠାରେ ପ୍ରୟୋଗ । ଶୋଧି – ଶୁଦ୍ଧକର ବା ଶୁଦ୍ଧି । ବଢିଲେ – ବ୍ୟସ୍ତକଲେ । ଶୂରୁପା – ଶୂର୍ପ, କୁଲ୍ଲା । ଅନୁବ୍ରତେ – ସର୍ବଦା ।

ସମାପ୍ତ



---

ମୁଦ୍ରାକର – ଶ୍ରୀ ଗୋବିନ୍ଦ ସାହୁ, ବାସନ୍ତ ପ୍ରିଣ୍ଟରସ୍, ମେରିଆ ବଜାର, କଟକ-୧

ଶ୍ରୀ

# ରହସ୍ୟମଞ୍ଜରୀ ।

ଭକ୍ତକବି ଦେବଦୁର୍ଲ୍ଲଭ ଦାସଙ୍କ

ବିରଚିତ ।

ବହୁପାଠ ଓ ସୁବିସ୍ତୃତ ମୁଖବନ୍ଧ ସହ

ରେଭେନ୍ସା କଲେଜର ଅଧ୍ୟାପକ

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍, ଏ, ଙ୍କ ଦ୍ୱାରା

ସଙ୍କଳିତ

ଓ

ପ୍ରକାଶିତ ।

ଦ୍ୱିତୀୟ ମୁଦ୍ରଣ ।

Price 12 annas    ମୂଲ୍ୟ ୧ ୦ ୪ ମାଷ ।

